# ହଳଦୀ ପତ୍ରର ବାସ୍ନା

## ଭାନୁଜୀ ରାଓ

ପ୍ରକାଶକ :



କଲ୍ୟାଣୀନଗର, କଟକ-୧୩

ପ୍ରଥମ ପ୍ରକାଶ :
ନବବର୍ଷ : ୧୯୯୮

ଅକ୍ଷରସଜ୍ଜା :



କଲ୍ୟାଣୀନଗର, କଟକ-୧୩

ମୁଦ୍ରଣ :
ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍
କଲ୍ୟାଣୀନଗର, କଟକ-୧୩

ମୂଲ୍ୟ :
ଟ. ୪୦/-
[ଚାଳିଶ ଟଙ୍କା ମାତ୍ର]

HALADI
PATRARA
BASNA

by
Bhanujee Rao
Published by :
KAHANI PRAKASANI
Kalyani Nagar,
Cuttack-13
First Edition :
1998

Price :
Rs. 40/- only

# ଉତ୍ସର୍ଗ

ଯେଉଁ ପ୍ରବୁଦ୍ଧ ମୁକ୍ତିମନା ପାଠକ ମାନଙ୍କୁ ସ୍ୱଚ୍ଛମନା ଆଧୁନିକ କବିତାକୁ ପ୍ରତ୍ୟୟ କରି ଗଣା କରନ୍ତି। ତାଙ୍କ ଏବଂ କବିତାର ଦର୍ପଣରେ ନିଜର ପ୍ରତିବିମ୍ବ ଦେଖି ପୁଲକିତ ହୁଅନ୍ତି ବାରମ୍ବାର।

— ପ୍ରତିଭା ରାୟ

# ସୂଚୀପତ୍ର

# ପାହାଚ

ପାହାଚ ଉଠିଛି
ଉପରକୁ
ଏକ-ଦୁଇ-ତିନି
କରି ଗଣି ଗଣି
ଉଠିବାକୁ ହେବ ।

ଭୁଲିଗଲେ ଚଳିବନି
ପ୍ରଥମ ପାହାଚକୁ
ଖ୍ୟାତିର ମେଦ ଝରିଗଲେ,
ପଦକ ସବୁ ଓହ୍ଲାଇ
ଦେଲେ ବେକରୁ,
ଉଠିବାକୁ ଆରାମ ଲାଗିବ,
ଉଠି ହେବ ସହଜରେ
ଉପରକୁ ।

ପାହାଚରେ ଉଠୁ ଉଠୁ
ଥମିଗଲି ବାଟରେ ହଠାତ୍,
ଖରା ଶୋଇଛି ଆସି
ମଝି ପାହାଚରେ ।
ଏ ମୋ ନିଜସ୍ୱ ଖୁବ୍
ସ୍ନିଗ୍ଧ ଓ ଏକାନ୍ତ ନିବିଡ଼,
ଉଠିବାକୁ ବାଟ ଛାଡ଼ି ଦେବ ।

ସ୍ନେହ-ପ୍ରୀତି-ପ୍ରେମର
ରେଲିଂରେ ଭରା ଦେଇ
ଧୀରେ ଧୀରେ ମୁଁ ଉଠୁଛି
ଉପରକୁ ।
ମଧ୍ୟବିତ୍ତ ସ୍ୱପ୍ନମାନଙ୍କୁ
ଝୁଲାଇ ଦେଇଛି ଫାଶ ଖୁଣ୍ଟରେ,
ଏଥର ନୂଆ ସ୍ୱପ୍ନଦେଖିବା
ପାଇଁ ।

ମୁଁ ଜଣେ ନିର୍ବିରୋଧୀ
ପରିଚ୍ଛନ୍ନ ଭଲ ମଣିଷ,
ମୋ ନଖରେ ମଲ୍ଲିକାର
ମାଂସ ଲାଖି ନାହିଁ
ଇନ୍ଦ୍ରାଣୀର ଓଠ ମୁଁ ତ
ଅଇଁଠା କରି ନାହିଁ ।
ତା ନିର୍ଲୋମ ନାଭି
ସ୍ପର୍ଶ ସୁଦ୍ଧା କରିନାହିଁ ମୁଁ ।

କ୍ରମଶଃ ପହଞ୍ଚିଲି ଶେଷ
ପାହାଚରେ,
ଟିକେ ବସି ପଡ଼ି
ଥକା ମାରୁଛି ।
ଏଠି ପହଞ୍ଚିଲେ ଦିଗନ୍ତ
ଦିଶେ,
ଆଉ ଦିଶେ ରକ୍ତାଭ ସୂର୍ଯ୍ୟାସ୍ତ
ମେଘର ଜଟିଳ ଜ୍ୟାମିତି ଭେଦି ।
ପ୍ରଥମ ପାହାଚକୁ
ମୁଁ ଭୁଲି ନାହିଁ,
ପଦକର ମାଳ ଫୋପାଡ଼ି
ଦେଇଛି ଦୂର ଅପନ୍ତରାକୁ,
ମୋତେ ବହୁତ ହାଲୁକା
ଲାଗୁଛି ଏଥର,
ହଁ, ବହୁତ ହାଲୁକା ।



# ମଶା

ଆଜିକାଲି ମଶାଙ୍କ ଉପଦ୍ରବ
ଭୀଷଣ ବଢ଼ିଛି,
ଯେଉଁଠାକୁ ଯାଅ ଖାଲି
ମଶାଙ୍କ ଗୁଣୁ ଗୁଣୁ ରାଗିଣୀ
ସେମାନେ ରକ୍ତ ନ ପିଇଲେ
ଛାଡ଼ିବେ ନାହିଁ ।

କିଶୋରୀ ଜହ୍ନର ଛାଇ
ପୋଛି ଗଲେ ଆକାଶ ଦେହରୁ
ସେମାନେ ବେଢ଼ି ଯାନ୍ତି
ମଣିଷକୁ ଆସି
କୁହୁଡ଼ି ପରି ଘୋଟିଯାନ୍ତି
ଘରର ପରିଧି ।
ରାତି ସଙ୍ଗେ ବିଶେଷ
ସମ୍ପର୍କ ନାହିଁ ସେମାନଙ୍କ,
ନିହାତି ମଧ୍ୟାହ୍ନରେ ବି
କାମୁଡ଼ନ୍ତି ମଶା ।

ହଠାତ୍ ପହଞ୍ଚିଗଲେ ମଶା-ମରା ଦଳ
ନାଳରେ ତେଲ ପକାଇସାରି
ଅକସ୍ମାତ୍ ମୋ ପଢ଼ା ଘରେ
ଅନୁପ୍ରବେଶ କଲେ ସେମାନେ,
ଟେବୁଲରୁ ଫୁଲଦାନୀଟା ଉଠାଇ
ସବୁ ପାଣି ଓଜାଡ଼ି ଦେଲେ ବେସିନ୍‌ରେ ।
କହିଲେ, 'ଫୁଲଦାନୀ ତ ମଶାଙ୍କ
ପ୍ରସୂତି-ଭବନ ।'
ଫୁଲ ସବୁ ମଉଳି ଗଲା
ଧୀରେ ଧୀରେ ।

ଆଜିକାଲି ଏକ ନୂଆ ଜାତି
ମଶାଙ୍କ ଉତ୍ପାତ ଆରମ୍ଭ ହୋଇଛି
ସେମାନେ ଡାଁଆଶ ବା ଅନୋଫେଲିସ୍ ନୁହଁନ୍ତି,
ସରକାରୀ ଅଫିସ୍‌ମାନଙ୍କରେ
ସେମାନଙ୍କ ପ୍ରାଦୁର୍ଭାବ ବେଶି,
ସେମାନେ ରକ୍ତ ଶୋଷନ୍ତି
ଖୁବ୍ ନରମ ଶୁଣ୍ଢରେ
ମୁହଁରେ ପିନ୍ଧିଥାନ୍ତି ହସର
ମୁଖା ସବୁବେଳେ,
ରକ୍ତ ନ ଦେଲେ ଫାଇଲ୍
ଅଟକି ଯିବ ମଝି ଟେବୁଲରେ,
ଆଉ ଘୁଞ୍ଚିବ ନାହିଁ ତିଳେ ।



# ଅଶରୀରୀ

ମୁଁ ଚାହୁଁଛି ନୈଃଶବ୍ଦ୍ୟ
ପାଖକୁ ଯିବାକୁ,
ଶବ୍ଦର ଶୃଙ୍ଖଳ ଭାଙ୍ଗି
ପହଞ୍ଚିବାକୁ ସେହି ଅନ୍ଧାରରେ
ଯାହା ଆଲୋକ ଠାରୁ
ଆହୁରି ଦୀପ୍ତିମାନ ।

ଶିଖରର ସାର୍ଥକ ବିନ୍ଦୁ
କେନ୍ଦ୍ରିତ ନୈଶବ୍ଦ୍ୟରେ,
ଯେଉଁଠି ରାଜତ୍ୱ କରୁଛି
ସ୍ତବ୍ଧ ନୀରବତା ଯାହା
ସ୍ୱମହିମାରେ ଭାସ୍ୱର ।

ଅକ୍ଷରମାନଙ୍କର ପଟୁଆର
ଭେଦି ମୁଁ ପହଞ୍ଚିବାକୁ ଚାହେଁ
ସେହି କବିତା ପାଖକୁ
ଯାହା ମୋତେ ସ୍ପର୍ଶ କରିବ
ତାର ସମବେତ ଶବ୍ଦ-ହୀନତାରେ ।
ସେଠି ରହିଥିବ ଏକ ଅନିର୍ବଚନୀୟ
ଅନୁଭବ କେବଳ ।

ଶବ୍ଦ ନାହିଁ, ଚିତ୍ର ନାହିଁ,
ରହିଛି କିଛି ତୀବ୍ର ବେଦନା
କବିତାର ପଙ୍‌କ୍ତି ମାନଙ୍କରେ ।
ଏ କବିତା ମୋର ନୁହେଁ,
ଏ କବିତା କାହାର.? କାହାର ?
ଏ କବିତା ଲେଖିଛି ଏକ
ଅବୟବହୀନ କ୍ରୁଦ୍ଧ ଅଶରୀରୀ ।
ଯିଏ ଦିନେ ସତ ସତ ପୃଥିବୀକୁ
ଭଲ ପାଇଥିଲା ।
ସେ ଆଜି ଏଠି ନାହିଁ
ଆମେ ତାକୁ ଦେଲୁ ନାହିଁ
କିଛି ।
ଅଭିମାନ କରି ସେ ତ
ଚାଲିଗଲା ପୃଥିବୀକୁ ଛାଡ଼ି ।
ଝରୁଅଛି ଅଭିମାନ ତାର

କବିତାର ପ୍ରତିଟି ଧାଡ଼ିରୁ,
ସେ କହିଛି ସେ କରିବ
ଯୁଦ୍ଧ ଆଜି ନାରୀ
ବିରୁଦ୍ଧରେ ।
ସେ ସହିଛି ନିଷ୍ଠୁର ବଞ୍ଚନା
ଯେତେ ଭଗ୍ନ ପ୍ରତିଶ୍ରୁତି,
ନାରୀଙ୍କ ପାଖରୁ ।
ଜହ୍ନ ବିଷୟରେ ତାର ଯୁକ୍ତି
ବେଶ୍ ଟାଣ,
ସେ ପଡ଼ିଛି ଧରା ତାର
ମୋହିନୀ ଫାନ୍ଦରେ ।

ସେ ରହିଛି ଅଭିଆଡା, ଅବିଶ୍ୱାସୀ,
ଅନିକେତ ଇତ୍ୟାଦି ଇତ୍ୟାଦି,
ତେଣୁ ସେ ବିଦାୟ ନେଲା
ସୂର୍ଯ୍ୟାସ୍ତ ପୂର୍ବରୁ ।
ଆଜି ସେ ମନେ ପଡ଼େ,
ଖୁବ୍ ମନେପଡ଼େ,
ଆଜି ତାର ମୃତ୍ୟୁଦିନ,
ଜନ୍ମଦିନ ପୁଣି ।



# ନିଃସଙ୍ଗ-ନିଳୟ

ଶାନ୍ତିର ଅନ୍ୟ ନାମ
ନିଃସଙ୍ଗତା ।
ମୁଁ ଏଭଳି ଏକ ଘର
ତିଆରି କରିବି ଯାହାର
ଝର୍କା ଆଗରେ ଆସି
ଠିଆ ହେଲେ,
ଚାରିଆଡୁ ନିଃସଙ୍ଗତା
ଅଜାଡ଼ି ହୋଇ
ପଡ଼ିବ ଛାତି ଉପରେ ।

ଏ ଘରର ଅଳିନ୍ଦମାନଙ୍କରେ
ବୋଳା ଥିବ ଶାନ୍ତି,
ଗବାକ୍ଷ ଓ କାନ୍ଥ ସବୁରେ
ସରସ ସବୁଜ ମରୁଦ୍ୟାନମାନେ
ଝୁଲୁଥିବେ ।
ମରୁଭୂମିରେ କୋଳାହଳ-ହୀନ
ସ୍ତବ୍ଧତା ବେଢ଼ି ରହିଥିବ
ଘରର ଚାରିପଟ ।
ମୁଁ ଖଟରେ ଶୋଇ ଶୋଇ
ଦେଖୁଥିବି ସମଗ୍ର ବିଶ୍ୱକୁ ।
ମୋ ଆଖି ଆଗରେ
ଫୁଟି ଉଠିବ ସାମୁଦ୍ରିକ ନୀଳ ଉଚ୍ଛ୍ୱାସ ।

ସବୁ ଅସମାପ୍ତ ସୂର୍ଯ୍ୟାସ୍ତ
ଧାଡ଼ି ବାନ୍ଧି ଆସି ଠିଆ ହେବେ ।
ମାୟାବିନୀ ଜହ୍ନ ସବୁ
ମୋ ଆଗରେ ବିବସ୍ତ୍ର ହେବେ
ନିଃସଙ୍କୋଚରେ
ନିଃସଙ୍ଗ ଚୌକିରେ ବସି
ମୁଁ ଦେଖୁଥିବି ନିର୍ଜନ ସୈକତରେ
ଢେଉଙ୍କ ଆତ୍ମସମର୍ପଣ ।
ଆକାଶର ତାରା ସବୁ
ଆସି ଧରା ଦେବେ
ମୋ ଘରେ ଖଞ୍ଜା ହେବା ପାଇଁ
ଛାତକୁ ଉଠିଲେ ଦେଖିବି
ମୋ ଶୈଶବର ଅତି-ଚିହ୍ନା
କିଶୋରୀ ନଈକୁ ।
ବିସ୍ତୀର୍ଣ୍ଣ ତୃଣଭୂମି କଡ଼େ କଡ଼େ
ସେ ଛୁଟୁଛି ଅଣନିଃଶ୍ୱାସୀ
ହୋଇ,
ତାର ପ୍ରେମିକ ସମୁଦ୍ରକୁ
ଭେଟିବ ବୋଲି ।
ବାଲି ଶେଯରେ ଥିବା
ବାଲିଗରଡ଼ାମାନଙ୍କ କଥା ସେ
ପୁରାପୁରି ଭୁଲି ଯାଇଛି
ଏଥର ।



# ପରମ-ପୁରୁଷ

ତ୍ରିଶଙ୍କୁ ଭଳି ମୁଁ ଝୁଲୁଛି
ଟେଲିଗ୍ରାଫ୍ ତାରରେ
ମୁଁ ଏକ କାନି-ଫଟା ଗୁଡ଼ି,
ମୋ ଦେହର ରଙ୍ଗ ଝଲସି
ଯାଇଛି ଖରା ଓ ବର୍ଷାରେ ।
ମୁଁ ଦିଶୁଛି ନିର୍ଜୀବ ଏବଂ
ଅତ୍ୟନ୍ତ ବିବର୍ଣ୍ଣ,
ଧ୍ୱସ୍ତ-ବିଧ୍ୱସ୍ତ ଏକ ଗୁଡ଼ିର
କଙ୍କାଳ କେବଳ ।

ଏଭଳି ଝୁଲିବା ଠାରୁ
ପେଞ୍ଚ ଲାଗି କଟିଯିବା ଭଲ
ମଝି ଆକାଶରେ ।
ମୁଁ ଜାଣିଛି ମୁଁ ଆଉ
ପାରିବିନି ଉଡ଼ି
ଚିରଦିନ ପାଇଁ ।
ସୋରେଇନବ୍ୟ ଗୁଡ଼ିପରି
ମୁଁ ପାରିବିନି ଆକାଶ ଚିରି
ଉଠିବାକୁ ଉପରକୁ
ସର ସର ହୋଇ ।

ଅଭିମାନ ଗୁମୁରୁଛି ଛାତି ଭିତରେ
ମୁଁ ଏକ ଆହତ ଚଢ଼େଇ,
ଡେଣା ବାଡ଼ଉଛି ଛଟପଟ
ହୋଇ ପଞ୍ଜୁରୀରେ ।
ମୁଁ କ୍ରମଶଃ ବୁଡ଼ି ଯାଉଛି
ଅତଳ ଅନ୍ଧାରରେ,
ଯାହାର କିଛି ଅବୟବ ନାହିଁ ।
ମୋ ଆଖିରେ ପାଣି
ନାହିଁ ବୁନ୍ଦାଏ,
ଅଶ୍ରୁ ଝରୁଛି ହୃଦୟରେ
ଅନବରତ ।
ମୋତେ ଲାଗୁଛି ମୋର ପରିଚିତ
ବନ୍ଧୁମାନେ ବିଶ୍ୱାସଘାତକତା
କରିଛନ୍ତି ମୋ ସଙ୍ଗରେ ।

ମୁଁ ଭାବୁଛି ମୃତ୍ୟୁ କଥା
ଦୁଃସ୍ୱପ୍ନ ପରି ଯାର ମୁହଁ,
ଓଠରେ ତା କଳା ଲିପ୍‌ଷ୍ଟିକ୍,
ପଚା ଶବର ଗନ୍ଧ ସ୍ୱେଦ ହୋଇ
ବୋହୁଅଛି ତା ଦେହରୁ ଖାଲି,
ଶାଗୁଣା ପରି ଚାଲି,
ହଲି-ହଲି ଦୋହଲି ଦୋହଲି ।

ମୃତ୍ୟୁକୁ ମୁଁ ଦେଖି ନାହିଁ
ଜାଣେ ନାହିଁ ତାହାର ଚେହେରା,
ଡେଙ୍ଗା କିମ୍ବା ଈଷତ୍ ବାଙ୍ଗରା ।

ତେବେ ଅଗ୍ରଜ ଅନେକ କବି
ମୃତ୍ୟୁକୁ ବସାଇଛନ୍ତି ଉତ୍ତୁଙ୍ଗ
ପ୍ରେମର ଗାଦିରେ ।
ସମ୍ବୋଧନ କରିଛନ୍ତି
ପରମ-ପୁରୁଷ ବୋଲି ତାକୁ ।
କହିଛନ୍ତି ସେ ଅତ୍ୟନ୍ତ ସୁଦର୍ଶନ
ଏବଂ ଦିଗନ୍ତକୁ ଆଉଜି
ଠିଆ ହୁଏ ।
ତାର ଦୀର୍ଘ ତାମ୍ରବର୍ଣ୍ଣ ଶରୀରରୁ
ନିର୍ଗତ ହୁଏ ଗୋଧୂଳିର ଦ୍ୟୁତି ।
ମୁଁ ଜାଣିଛି ଗୋଟେ କଥା,
ଆୟୁ ମୋର ନିତାନ୍ତ ସୀମିତ,
ଇନ୍ଦ୍ରଦ୍ୟୁମ୍ନ ପୋଖରୀର
କଇଁଚ ମୁଁ ନୁହେଁ,
ମୃତ୍ୟୁର ଆସିବା ଦିନ
କ୍ରମଶଃ ଆସୁଛି ପାଖେଇ,
ବୁଝୁଛି ତା ପ୍ରତି ମୁହୂର୍ତ୍ତରେ ।
ତା ଲାଗି ମୋ ବରଣ୍ଡାରେ
ରଖିଛି ସଜାଇ,
ସୁଦୃଶ୍ୟ ବେତ-ଚୌକି
ସେ ବସିବ ବୋଲି ।



# ବିଷାଦ-କୁହୁଡ଼ି

ଉତ୍ସୁକ ଟେବୁଲରେ ମୁହଁ ମାଡ଼ି
ପଡ଼ି ରହେ କେତୋଟି କବିତା,
ଅଭିମାନ କରି ।
କବିର କଲମରୁ ବୋହୁଅଛି
ଆଜିକାଲି କାଳୀ ନୁହେଁ
ନୀଳାଭ କୁହେଳି ।

ମନ ମୋର ବିଷାଦରେ
ଯାଇଅଛି ଭରି,
ନଈର ଭୁଲ୍ ପଣିକିଆ ଶୁଣି
ପବନ ବାଟ ହଜାଇଛି ।
କୁହୁଡ଼ି ହୋଇଛି ଠିଆ
ଗଛକୁ ଆଉଜି ।
ବିଷାଦର ଧୂସର କୁହୁଡ଼ି
ଝରୁଛି କେବଳ,
ଆକାଶରୁ ବିଷାଦ ଝରୁଛି
ଚରାଚର ଦିଶୁଅଛି ପ୍ରଗାଢ଼
ବେଦନାରେ ମ୍ଳାନ ।
ଛାତିର ଯୁଗଳ ଢେଉ,
ଆଖିର ନିରିମାଖୀ ଭାଷା
ଦେଖିବାକୁ, ପଢ଼ିବାକୁ,
ମନ ବଳୁ ନାହିଁ ।

ପ୍ରେମ ବଡ଼ ଭୟଙ୍କର,
ପ୍ରେମଠାରୁ ରହୁଛି
ଦୂରେଇ !
ପ୍ରେମ ବଡ଼ ମାରାତ୍ମକ,
ବଡ଼ ସାଂଘାତିକ,
ବନ୍ଧୁକର ଗୁଳି ଠାରୁ
ଆହୁରି ଅମୋଘ,
ହୃଦୟକୁ ଅନାୟାସେ
ବିଦ୍ଧ କରି ପାରେ,
ଆତତାୟୀ ପରି ।

ଖଟ ମୋର ଶରଶଯ୍ୟା,
ଫୋଡ଼ି ହୁଏ ପିଠିରେ ମୋ
ପ୍ରତି ମୁହୂର୍ତ୍ତରେ ।
ରାତି ଆସେ ମାର୍ଚ୍ଚ କରି
ବୁଟ୍ ଜୋତା ପିନ୍ଧି,
ମୋ ସ୍ୱପ୍ନକୁ ଦଳି-ଛେଚି
ଚୁନା କରିବାକୁ ।
ଅଲଗୁଣୀରେ ଝୁଲୁଅଛି
ଶାଢ଼ୀ, ସାୟା, ପେଣ୍ଟ, ସାର୍ଟ
ଧାଡ଼ି ଧାଡ଼ି ହୋଇ,
କଂସେଇ ଦୋକାନର
କଟା ଛେଳି ପରି
ଝୁଲୁଅଛି ଟୋଡ଼ ଟେକି
ମୁଣ୍ଡ ତଳ କରି ।

ବାହାରେ ପଡ଼ିଛି ଖରା
କୃଷ୍ଣଚୂଡ଼ା ଜଳୁଛି ଗଛରେ,
ଖରା ପୁଣି ଡେଇଁ ପଶେ
ଘର ଭିତରକୁ,
ସେ ଆସି ଶୋଇ ରହେ
ସୁବିନ୍ୟସ୍ତ ଶେଯରେ ମୋହର ।
ହଠାତ୍ ଖରା ଆସି
ଶୋଷି ନିଏ ସମଗ୍ର କୁହୁଡ଼ି,
ବିଷାଦ କ୍ଷଣକେ ଉଭାନ,
ଅତୀତର ସବୁ ସ୍ୱପ୍ନ,
ଭବିଷ୍ୟତ, ସବୁ ବର୍ତ୍ତମାନ,
ସ୍ୱପ୍ନ କିଛି ଯାଇ ନାହିଁ ହଜି,
ସେମାନେ ଆସନ୍ତି ଫେରି
ଗୋଟି ଗୋଟି କରି,
ମୋ ପାଖକୁ ମାୟାବୀ
ନିଦରେ ।



# ମୋ ସହର

ସହରରେ ପହଞ୍ଚିଲି
ବଡ଼ି ପାହାନ୍ତାରେ,
ଏ ମୋର ଚିହ୍ନା ସହର,
ଯେଉଁଠି ମୁଁ ଦିନେ
ଜନ୍ମ ନେଇଥିଲି,
ମଝିରେ କେଇଟା ବର୍ଷ
ବ୍ୟବଧାନ ଖାଲି ।
କୁହୁଡ଼ିରେ ମଗ୍ନ
ଘରମାନେ,
ମୁଁ ଏମାନଙ୍କୁ ଚିହ୍ନି
ପାରୁ ନାହିଁ ।
ଏ ସବୁ ଘରୁ କାହିଁକି
ହଳଦୀ-ପତ୍ରର ବାସ୍ନା
ଭାସି ଆସୁ ନାହିଁ
ଆଜି ପରା ପୋଢୁଆଁ-ଅଷ୍ଟମୀ ?
ମାଉସୀ କ'ଣ ଫେରିନାହିଁ
ଗାଧୁଆ ତୁଠରୁ,
ଏବେବି ସେ ବୁଡ଼ ପକାଉଛି ?
ବାଳୁତ ସୂର୍ଯ୍ୟ ପରି
ଲାଲି ଟହ ଟହ
ଆରିସା ପିଠା ମୋ ପାଟିରେ
ଗୁଞ୍ଜି ଦେବ କିଏ ?

ଜଟିଳ ଗଣିତ ପରି
ଗଳି ସବୁ ଲମ୍ବିଛନ୍ତି,
ଗଳିର ଅଡୁଆ ଗ୍ରନ୍ଥି
ଫିଟାଇବା ବଡ଼ ମୁସ୍କିଲ୍ ।
ଏ ସାହିର ଘରର ଛାତରେ
ପିଲାଦିନେ ଊର୍ଦ୍ଧ୍ୱଗ୍ରୀବ ହୋଇ
କଟାଉଛନ୍ତି ଘଣ୍ଟା-ଘଣ୍ଟା
ହାତେ ଧରି ଗୁଡ଼ି ଓ ଲଟେଇ
ଆକାଶକୁ ଅନାଇ ଅନାଇ ।
କେତେଥର ଏଠି ମୁଁ
ପଡ଼ିଛି ପ୍ରେମରେ
ହାତ-ଗୋଡ଼ ଭାଙ୍ଗି ନାହିଁ,
ଛିଣ୍ଡି ନାହିଁ ଆଣ୍ଠୁ-ଗଣ୍ଠି,
କିନ୍ତୁ, ହୃଦୟଟା ଭାଙ୍ଗିଗଲା
ଚୂର୍‌ମାର୍ ହୋଇ ।
ଚୋରାବାଲି ପରି ପ୍ରେମ
ଭିଡ଼ି ନେଲା ମୋତେ,
ନିମଜ୍ଜିତ କଲା ତାର
କ୍ରୂର ଆଶ୍ଳେଷରେ ।
ଧୀରେ ଧୀରେ ବୁଡ଼ି ଯାଏ
ମୁଁ ତ,
ଉଠିବାକୁ ଚେଷ୍ଟା କରି
ଆହୁରି ବୁଡ଼ିଯାଏ ଦ୍ରୁତ ।
ପ୍ରୌଢ଼ ପବନର ତିଳେ ହେଲେ
ଆସ୍ଫାଳନ ନାହିଁ,

ଖୁବ୍ ଧୀରେ ସ୍ପର୍ଶ କରେ
ଏ ବିପନ୍ନ ସହରକୁ ଆସି ।
ଗୁଳି-ବିଦ୍ଧ ପ୍ରତିଟି ପ୍ରହର,
ଏଠି ଆଉ ଜହ୍ନ ଆସେ ନାହିଁ ।
ଆକାଶଟା ପଡ଼ି ରହେ
ବେବାକ ଫାଙ୍କା, ଆଉ
ସୂର୍ଯ୍ୟ ଅସ୍ତ ଗଲେ, ଦିଗନ୍ତରେ
ଦେଖାଦିଏ ନିରକ୍ତ ଗୋଧୂଳି ।
ମୁଁ କଣ ଫେରିଯିବି
ମୋର ପ୍ରିୟ ସହରକୁ ଛାଡ଼ି ?
କେତେ ସ୍ମୃତି, କେତେ ସ୍ୱପ୍ନ,
କେତେ ସବୁ ବିମୁଗ୍ଧ ଗୋଧୂଳି,
ସବୁ କ'ଣ ଭୁଲିଯିବି,
ପୁଲକର ରୋମନ୍ଥନ ଖାଲି ?

ନା, ମୁଁ ଏଥର ପ୍ରତି ଗଳି
ମୋଡ଼ରେ ଠିଆ ହୋଇ
ସଦମ୍ଭରେ ଘୋଷଣା କରିବି,
ମୁଁ ଆସିଛି ବୋଲି, ଏବଂ
ମୋ ସହରର ବିଷାକ୍ତ ଚୁମ୍ବନକୁ
ପ୍ରତୀକ୍ଷା କରିବି ରୁଦ୍ଧ ନିଃଶ୍ୱାସରେ,
ଯାହାକୁ ମୁଁ ପାରିନାହିଁ ଭୁଲି ।



# ସ୍ୱର୍ଗ

ଏଠାରେ ଦିଗନ୍ତ ନାହିଁ,
ଦିଗ୍‌ବଳୟ ମାପେ ନାହିଁ
ଆକାଶର ସୀମା ।
ଏଠି ଅକ୍ଷାଂଶ ନାହିଁ,
କିମ୍ୱା କୌଣସି ଦୀର୍ଘ
ଦ୍ରାଘିମା,
କିଛି ହେଲେ ନାହିଁ
ଏଠି ଜହ୍ନ ବି ନାହିଁ,
ମେଘମାନେ ଚରନ୍ତିନି,
ଆକାଶର ପଡ଼ିଆରେ ଆସି ।
ଏଠି ରାତି ନାହିଁ,
ଦିନ ନାହିଁ,
ଘଟେ ନାହିଁ ତାରାର
ସ୍ଖଳନ ।
ଛାତିର ନୈରତ କୋଣେ କିଛି ନାହିଁ,
ଅବକାଶ ନାହିଁ ଏଠି
ସ୍ୱପ୍ନ ଦେଖିବାର ।

ଅଶ୍ରୁ, ସ୍ୱେଦ, ରକ୍ତରେ ସିକ୍ତ
ଧାରା ବିବରଣୀ କେହି ପଢ଼ି ଶୁଣାଏନି ।
ଏଠି ଖାଲି ବାୟୁହୀନ
ରିକ୍ତ ଅପନ୍ତରା, ଖାଁ-ଖାଁ
ଗୋଡ଼ାଏ ।
କୌଣସି ଗଛ ନାହିଁ ଏଠି
ଛାଇ ବା ଆସିବ କୁଆଡୁ ?

ଶୀତ-ଗ୍ରୀଷ୍ମ, ବସନ୍ତର
ପରାଗ ମିଳନ ପାଇଁ
କେହି ଏଠି ପ୍ରତୀକ୍ଷାରେ
ନାହିଁ ।
ଜାଗତିକ ଝଡ଼, ବର୍ଷା
ଆସେ ନାହିଁ ଏଠି,
ସୁଦୁର୍ଲଭ ମୋହମୟ ଖରା ।

ବୋହୁଛି ପ୍ରେମର ଶବ
ମୋ କାନ୍ଧରେ,
ପ୍ରହରର ପଇଁତରା ପରେ
ମୁଁ ସଜାଇବି ପ୍ରେମ ପାଇଁ
ଚିତା,
ଚନ୍ଦନ କାଠରେ ।
ମୁଁ ଆଉ ସ୍ୱର୍ଗକୁ ଯିବି ନାହିଁ,
ମୋ ପାଖରେ ନିଶୁଣିର
ଏକାନ୍ତ ଅଭାବ ।
ଏଥର ମୁଁ ଶୋଇ ରହିବି
କୋମଳ ଘାସରେ,
ଚିତାକୁ ଲଗାଲଗି ହୋଇ ।
ସ୍ୱପ୍ନ ଦେଖିବି ଗୋଟାଏ
ସୁବିସ୍ତୀର୍ଣ୍ଣ ନଈ ମୁହାଁଣରେ,
ଆଉ କିଛି ସାମୁଦ୍ରିକ
ନୀଳ ଉଚ୍ଛ୍ୱାସର
ଯାହା କେବଳ ଫୁଲି ଫୁଲି
ଉଠୁଥିବ ଜହ୍ନ ଆଲୁଅରେ ।



# ସେହି ନାରୀମାନେ

ମଝି-ରାତି ଚାଲି ଚାଲି
ପାରି ହେଲା ଅଦୃଶ୍ୟ ଅଳିନ୍ଦ ।
ଶୁଖିଲା ପତର ପରି ପଡ଼ିଥିବା
ସ୍ୱପ୍ନଙ୍କୁ ସାଉଁଟିବାକୁ ଡର ସହିଲାନି ।
ସ୍ୱପ୍ନ ସବୁ ଭାଙ୍ଗିଗଲେ ଚୁନ୍ ଚୁନ୍ ହୋଇ
ତା ଗୋଡ଼ ଚାପରେ ।
ଏଥର ମୁଁ ବିତାଇବି ବିନିଦ୍ର ରଜନୀ,
ନିଦ ପଳାଇଲା ମୋ ଆଖିରୁ
ଛାଟିପିଟି ହୋଇ ।

ବିଡ଼ମ୍ୱନା ଖାଲି ଏ ଜାଗରଣ,
ନିଦକୁ ଦଳି ଦେଇ
ଚାଲିଗଲା ରାତି,
ଅସ୍ୱଷ୍ଟ ନକ୍ଷତ୍ର ଆଡ଼କୁ ।
ଖଟରେ ପଡ଼ି ରହେ
ରିକ୍ତ ଶରୀର ମୋର
ଆହତ ସରୀସୃପ ପରି ।
ମୋ ନିଦକୁ ଖୁନ୍ କଲା କିଏ ?
ଏହାର ଉତ୍ତର ପାଇଁ
ସୁତୀବ୍ର ମସ୍ତିଷ୍କ କିମ୍ବା
ସୁତୀକ୍ଷ୍ଣ ମେଧାର କିଛି
ପ୍ରୟୋଜନ ନାହିଁ ।

ସେହିସବୁ ସ୍ୱେଦ-ଗନ୍ଧୀ ଲୋମଶ
ନାରୀମାନେ ହାତତାଳି ଦେବେ
ମୁଁ ଶୋଇ ପାରିଲିନି ବୋଲି ।
ସେମାନେ କଣ ପ୍ରସାଧନ, କରୁଥିବେ
ଦର୍ପଣ ଆଗରେ ବର୍ତ୍ତମାନ ?
ଓଠରେ ଲଗାଉଥିବେ ରଙ୍ଗର ପ୍ରଲେପ,
ଆଖିରେ କଜଳ, ନଖରେ ପାଲିସ୍,
ରାତି ବାରଟାରେ ?
ସେମାନଙ୍କ ଚିନ୍ତାରେ ମୋ ଅନୁପ୍ରବେଶକୁ
ପସନ୍ଦ କରିବେନି ମୋଟେ,
ସେମାନେ ମୋ ଜୀବନକୁ ବ୍ୟର୍ଥ
ଆଖ୍ୟା ଦେବେ,
କହିବେ, 'ଛି, ଛି, ଲୋକଟା ଶୋଇପାରୁ ନାହିଁ ।'
ଏବଂ, ହସରେ ଉଡ଼ାଇ ଦେବେ ମୋତେ ।
ଜଣେ ବିଧ୍ୱସ୍ତ କବିର ଶୋଇବା ନ ଶୋଇବାରେ
ସେମାନଙ୍କ କଣ ଯାଏ ଆସେ ?
ଜୀବନର ଦିଗନ୍ତ ରେଖା
ଦୂରକୁ ଘୁଞ୍ଚି ଯାଉଛି କ୍ରମଶଃ,
ତୀବ୍ର ବେଦନାରେ ଛାତି ଫାଟି ଯାଉଛି
ଖଣ୍ଡ ଖଣ୍ଡ ହୋଇ ।
ସେ ଭୀଷଣ ତୃଷ୍ଣାର୍ତ୍ତ ଏହି ମୁହୂର୍ତ୍ତରେ ।
କିଏ ତାକୁ ଫେରାଇ ଦେବ
ତାର ଶୈଶବ, କୈଶୋର ଆଉ
ଅତୁଟ ଯୌବନକୁ ?

ସେହି ସବୁ ନାରୀମାନେ
ଅତିରିକ୍ତ ପ୍ରତିହିଂସା ପରାୟଣ ଏବେ
ସେମାନେ କବିକୁ ସେମାନଙ୍କ ରକ୍ତିମ ନଖରେ
ଚିରି ଫାଳ ଫାଳ କରି ଦେବେ
ବୋଲି ଚକ୍ରାନ୍ତ କରୁଛନ୍ତି ।
ସେମାନଙ୍କ ଦୁଇ ଓଠରେ ଜମିଥିବା
ସମସ୍ତ ବିଷକୁ ଢାଳି ଦେବେ
ଚୁମ୍ବନରେ କବିର ଓଠ ଭିତରକୁ ।
ସେମାନେ ବେଗବାନ ଧୂମକେତୁ ପରି
ଆଗେଇ ଆସୁଛନ୍ତି ।
ସେମାନଙ୍କ ପ୍ରସାଧନ ସରି ନାହିଁ ଯଦିଓ,
ଏବଂ, ତରବରରେ ଅନ୍ତର୍ବାସ ପିନ୍ଧିବାକୁ
ଭୁଲି ଯାଇଛନ୍ତି ସେମାନେ ।



# ଶୀତ ରାତି

ପରିଚିତ ମୁହଁ ସବୁ
ହଜିଯାଏ ସ୍ମୃତିର ପଟରୁ,
ଯେମିତି ଢେଉର ବୃତ୍ତ
ମିଳାଏ ପାଣିରେ ।
ଗୋଧୂଳି ଆସି ନିଃଶବ୍ଦରେ
ଠିଆ ହୁଏ ଦିଗନ୍ତର
ପ୍ରାନ୍ତିକ ସୀମାରେ,
କେତେବେଳେ କେହି ଜାଣେ ନାହିଁ ।

ସମୟର ବିପନ୍ନ ହୃତ୍‌ପିଣ୍ଡ
ସହସା ଥମିଲେ,
ପବନର ଲାବଣ୍ୟହୀନ
ବିଦାୟ ରାଗିଣୀ
ବାଜି ଉଠେ ମୃଦୁ ଆଭାସରେ ।

ଅସମାପ୍ତ ଶୀତ ରାତି
ଘୋସାରି ଘୋସାରି
ଚାଲେ ପାଦ,
ସମୁଦ୍ରର ଢେଉ ସବୁ
ବିଳାପରେ ପ୍ରବଳ ଉନ୍ମାଦ
ହୁଅନ୍ତି ସେତେବେଳେ ।

ଜାଣିଚାଏ ସୁଖ ପାଇଁ
ଆତ୍ମନିପୀଡ଼ନ ଜମା
ଭଲ ଲାଗେ ନାହିଁ ।
ସ୍ଥବିର ପାହାଡ଼ ସବୁ
ଆଛନ୍ନ ଶୀତରେ
ଅନ୍ଧାର ମାଡ଼ି ଆସେ
ଖୁବ୍ ଧୀରେ ଧୀରେ,
କୁହୁଡ଼ିରେ ଘାରି ହୋଇ
ସମସ୍ତ ନକ୍ଷତ୍ରମାଳା
ଲୁଚିଯାଏ ଘୋର ବିଷାଦରେ ।

ବଞ୍ଚିବାର କିଛି ହେତୁ
ପାଇବାକୁ ହେଲେ,
ବିଚ୍ଛେଦର ବ୍ୟବଧାନ
ଟପିବାକୁ ହେଲେ,
ପ୍ରୟୋଜନ କିଛି ଦମ୍ଭ
ବିସ୍ତୃତ ସେତୁର ।

ଅସହ୍ୟ ଶୀତ ରାତି
କାହିଁ ଟିକେ ଉତ୍ତାପ ନାହିଁ,
ପୃଥିବୀର ମାୟାବୀ ମୁହଁ
ମୋ ପାଖରୁ ରଖିଛି ଲୁଚାଇ
କୁହୁଡ଼ି ଓ କାଲୁଆ ପବନ,
କାହିଁକି ଜାଗୁ ନାହିଁ
ବର୍ତ୍ତୁଳ ବିସ୍ମୟ ପରି ଜହ୍ନ,
ଆକାଶରେ ?

ନିଷ୍ଠୁର ଶୀତ ରାତି
ଶୋଇବାକୁ ଦିଏ ନାହିଁ ମୋତେ,
ଉତ୍ତାପ ମିଳେ ନାହିଁ,
ହେଉ ପଛେ ଓଜନ ରେଜେଇ
ଦେହସାରା କାମୁଡ଼ନ୍ତି ବିଛା,
ପ୍ରକୃତ ଉଷ୍ଣତା ମିଳେ ଜୀଅନ୍ତା
ରେଜେଇ ପାଖରୁ
ଆଶ୍ଲେଷରେ ଭିଡ଼ି ଧରେ ସିଏ,
ସବୁ ଶୀତ ମୁହୂର୍ତ୍ତେ ପଳାଏ ।



# ସୂର୍ଯ୍ୟ

ସହରର ରାସ୍ତାରେ ରାସ୍ତାରେ
କାନ୍ଥରେ କାନ୍ଥରେ
ସୂର୍ଯ୍ୟ ଆଙ୍କେ ଖରାର
ପୋଷ୍ଟର ।
ଆଜିବି ଉଠିଛି ସୂର୍ଯ୍ୟ
ପ୍ରତିଦିନ ପରି,
ଅଳିନ୍ଦରେ ଅଳିନ୍ଦରେ
ଖେଳିଯାଏ ହସର ଲହରୀ ।
ସେ ଢାଳେ ଅକାତରେ
ଖରାର ତରଳ ସୁନା,
ଏ ସୁନାରେ ଶୁଳ୍କ
ଲାଗେ ନାହିଁ ।

ପାହାଡ଼ ଶିଖରେ ଖରା
ଅଟକି ଯାଏ,
ବରଫ ପିଗଳେ,
ଝଟକେ ହୀରକ-ଦ୍ୟୁତି
ଆଖି ସହେ ନାହିଁ,
ଉଜ୍ଜ୍ୱଳ ଚରାଚର
ରୌଦ୍ର-ସ୍ନାନ କରେ ।

ସୂର୍ଯ୍ୟ କ'ଣ ବାସ କରେ
ଅପର ଗ୍ରହରେ,
ପ୍ରତିଦିନ ସନ୍ଧ୍ୟାରେ
ସମୁଦ୍ରରେ ଝାସ ଦିଏ ସିଏ ?
ଦିଶେ ନାହିଁ ସୂର୍ଯ୍ୟର ଶିଖା,
କର୍କଶ ପବନରେ ସମୁଦ୍ରରେ
ଖାଲି ଢେଉ ଉଠେ !

ହତବୀର୍ଯ୍ୟ ସୂର୍ଯ୍ୟର
ସମୁଦ୍ରରେ ଘଟିଛି ବିଲୟ
ତା ଘୋଡ଼ାଙ୍କ ହ୍ରେଷା ଧ୍ୱନି
ଆଉ ଶୁଭୁ ନାହିଁ କେଉଁଠିବି ।
ସେମାନେ ଅନ୍ଧାରରେ
ଦୌଡୁଛନ୍ତି ବାଟବଣା ହୋଇ
ଏଣେତେଣେ ଉଦ୍ଦେଶ୍ୟ ବିହୀନ ।
ସୂର୍ଯ୍ୟ ଆଉ ଉଠିବନି
ଢେଉର ପ୍ରବଳ ସ୍ରୋତ ଭେଦି,
ସୂର୍ଯ୍ୟର ପରାଜୟ, ସାମୁଦ୍ରିକ
ସଲିଳ-ସମାଧି,
ତିର୍ଯ୍ୟକ ଜହ୍ନ ଆଲୁଅରେ ।



# ଜଙ୍ଗଲକୁ ଯିବି

ମୁଁ ଏଥର ଜଙ୍ଗଲକୁ ଯିବି,
ସହରର କୋଳାହଳ ଭଲ
ଲାଗୁ ନାହିଁ ।
ମଟରର ଅହଙ୍କାରୀ 'ହର୍ଣ୍ଣ'
ବାଟୋଇକୁ ଚମକାଇ
ଦେଉଛି ବାରମ୍ବାର ।
ବୁଲାଷଣ୍ଢଙ୍କ ହଠକାରୀ
ରାସ୍ତା- ଅବରୋଧ କିମ୍ବା,
କାମୁଡ଼ା କୁକୁରଙ୍କ ସ୍ୱଚ୍ଛନ୍ଦ
ବିଚରଣ ଭୂମିରେ
ମୋର ଆଉ ରହିବାକୁ
ମନ ବଳୁ ନାହିଁ ।

ଆବର୍ଜନାର ସାନ ସାନ କୁଦ,
ଅଥବା,
ବିସ୍ଫୋରଣର ତୀବ୍ର ବାରୁଦ
ଗନ୍ଧ ଭାସି ଆସେ
ରାତିର ଦେହକୁ,
ସହରର ଏ ରାତି ଶିହରି ଉଠେ
ଧର୍ଷଣର ଆର୍ତ୍ତନାଦରେ
ଥରକୁ ଥର ।

ଆକାଶରେ ଜହ୍ନ ଆସି
ଠିଆ ହୁଏ ଅଚଳ ଅଧୁଲି,
ଚାରିଆଡ଼େ ପଡ଼ି ରହେ
ନିହତ ଗୋଧୂଳି ।

ଏଥର ମୁଁ ଜଙ୍ଗଲକୁ ଯିବି
ଯେଉଁଠି ରାସ୍ତା ନାହିଁ
ମଟର ଯିବାକୁ,
ଏଠି ଖାଲି ଗଛଙ୍କ ସାମ୍ରାଜ୍ୟ,
ସବୁଜର ସମାରୋହ ଚାରିଆଡ଼େ ।
ମୁଁ ଏଥର ଶୋଇବି
ଝରା-ପତ୍ରର ବିଛଣାରେ
ଚୁପ୍‌ଚାପ୍ ।

ଗଛ ସବୁ ଜହ୍ନକୁ 'ହେଡ଼' କରିବାକୁ
ଚେଷ୍ଟା କରନ୍ତି,
ଆଉ ଘାସମାନେ ଚୈତନ୍ୟଙ୍କ ଭଳି
କୀର୍ତ୍ତନରେ ମାତି ଦୁଇ ହାତ
ଉପରକୁ ଟେକି ନାଚନ୍ତି ଏଠାରେ ।
ସ୍ଥବିର ପର୍ବତ-ମାଳା
ଗୋଧୂଳିର ରଙ୍ଗ ବୋଲି
ହେମନ୍ତ ଦେହକୁ ଆଉଜି
ଠିଆ ହୁଅନ୍ତି,
ପରୀମାନେ ଓହ୍ଲାନ୍ତି

ପାଣିରେ
ରାତି ଆସେ ବିନା ଭୂମିକାରେ ।
ନକ୍ଷତ୍ରର ମାୟାବୀ ଆଲୋକ
ଝରି ପଡ଼େ ଆକାଶରୁ ।
ନିର୍ଜନ ନଈ ପଠା ପାଖେ
ଅକସ୍ମାତ୍ ପହଞ୍ଚେ ସ୍ୱପ୍ନର
ନୀଳ ଟ୍ରେନ ଆସି
ପାଟିରେ କୁ - ଝିକ୍ - ଝିକ୍
ଶବ୍ଦ କରି କରି ।
ସେ ମୋତେ ନେଇଯିବ
କାଶତଣ୍ଡୀ ଉପତ୍ୟକା ଡେଇଁ
ପ୍ରଜାପତିଙ୍କ ଗାଁକୁ ।
ମୁଁ ଆଉ ଫେରିବିନି ସହରକୁ,
ସତରେ ଆଉ ଫେରିବିନି ।



# ହେମନ୍ତର ଚିତା

ମୁଁ ବୋହୁଛି ହେମନ୍ତର ଚିତା
ମୋ ଛାତି ଭିତରେ ।
ଛାତିର ନିଭୃତରେ ହେମନ୍ତ
ପୋଡୁଛି ଅତି ସନ୍ତର୍ପଣରେ
କୋଳାହଳ-ହୀନ ଖୁବ୍ ନୀରବରେ ।
ବସନ୍ତ ପରି ଉଛୁଳ ନୁହେଁ
ହେମନ୍ତ,
ସେ କେବଳ ଜ୍ୱଳି ଯାଏ
ନିର୍ଜନରେ ଆଖି ଆଢୁଆଳେ ।

ଫୁଲର କୋରକ ଫୁଟେ
ନାହିଁ,
କୋଇଲି ଅଚାନକ ଡେଣା
ବାଡ଼ାଏ ଫଡ଼ ଫଡ଼ ହୋଇ,
ପାଁଉଶ ହୋଇ ଝରି ପଡ଼େ
ସବୁ ବିଷଣ୍ଣତା ମୋ ଛାତି
ଭିତରେ ।
ହେମନ୍ତ ପୋଡ଼ି ଯାଏ,
ଅଙ୍ଗାର ପାଲଟେ, ଖୁବ୍
ଧୀରେ ଧୀରେ ।

ଆକାଶ ଧୂସର ଦିଶେ
ହେମନ୍ତର ମ୍ଲାନ ଛାଇ
ଦୋହଲେ ପାଣିରେ ।
ସବୁ ଗଛ ପାଣ୍ଡୁର ଦିଶନ୍ତି,
ସେମାନେ ଶୋଇଛନ୍ତି ଗଭୀର
ନିଦରେ ।
ଏ ନିଦ ସହଜେ
ଭାଙ୍ଗେ ନାହିଁ ।
ଆଳଖ ଲାଗିଥାଏ
ସବୁଜ ପତ୍ରରେ ସେମାନଙ୍କ ।

ରକ୍ତର ସବୁ କୋଳାହଳ
ସ୍ତବ୍ଧ ଆଜି,
ମୋ ଛାତିରେ ହୁ-ହୁ
ହୋଇ ହେମନ୍ତ ଜଳୁଛି,
ବଗିଚାରେ ପଡ଼ି ରହେ
କୋଇଲିର ଶବ,
ଦଗ୍ଧ ହେମନ୍ତରେ, ହାୟ !



# ଜନ୍ମଦିନ

ମୋ ପ୍ରିୟା ଧରିଛି ହାତେ ଛୁରୀ,
ସେ କାଟିବ କେକ୍ ଆଜି
ତାର ଶୁଭ ଜନ୍ମ ଦିନରେ ।
ସେ ଫୁଙ୍କି ଲିଭାଇ ଦେବ
ମୋହମବତୀର ଧାଡ଼ି
ସମସ୍ତେ ହାତତାଳି ଦେବେ,
ହଠାତ୍ ପଂଝାଏ ପାରା
ଉଡ଼ିଯିବେ ଆକାଶ ଆଡ଼କୁ
ହସି ହସି ଲୋଟିଯିବ ସିଏ ।

ମୁଁ କିନ୍ତୁ ଗାଇବିନି ଗୀତ
ପିଆନୋ ବଜାଇ କିମ୍ୱା
ଗୋଲ୍ ହୋଇ ବୁଲି ବୁଲି
ପାରିବିନି ବେଲୁନ୍ ଫଟାଇ
ସଶବ୍ଦରେ ।

କୋକାକୋଲା ମୋତେ ଜମା
ଭଲ ଲାଗେ ନାହିଁ ।
ପେପ୍ସି ଲାଗେ ଘୋଡ଼ା-ମୁତ
ଭଳି,
ଟେବୁଲ୍‌ରେ ସଜା ଥିବ ସୁଦୃଶ୍ୟ
ମଦର ବୋତଲ,
ମୁଁ ନିଜକୁ ଦୂରେଇ ନେବି
ସେ-ସବୁରୁ ସନ୍ତର୍ପଣରେ ।

ମୁଁ ଚାହିଁଥିଲି ତାକୁ
ଏକାନ୍ତରେ ପାଇବାକୁ ଆଜି
ଶୀଘ୍ର ଶୀଘ୍ର ମୁଁ ଫେରିଛି
ସନ୍ଧ୍ୟାର ଟିଉସନ ସାରି,
ସେ କିନ୍ତୁ ମୋ ଆଡ଼କୁ
ଅନାଁଇଲା ନାହିଁ ଥରେ ହେଲେ ।
ଆଜି ତାର ଜନ୍ମଦିନ
ଶୁଭେଚ୍ଛା ଅଜାଡ଼ି ପଡୁଛି,
ଟେବୁଲ୍ ଗଲାଣି ଭରି
ଫୁଲର ତୋଡ଼ାରେ ।
ମୋ ପ୍ରିୟାକୁ ବେଢ଼ିଛନ୍ତି
ପଲେ ଝିଅ ଚିକ୍ ଚିକ୍
ଦିଶେ ତାଙ୍କ ଗାଲ,
ଦୋକାନର ସୁସଜ୍ଜିତ
କଣ୍ଢେଇ କେବଳ ।

ଘରର ଆଲୁଅ ସବୁ
ମୋ ଆଖିକୁ ଅନ୍ଧାର ଦିଶୁଛି
ଅବଜ୍ଞାରେ ମୋ ଦେହ
ଉଠୁଛି ଶୀତେଇ
ରଜନୀଗନ୍ଧାର ତୋଡ଼ା
ମୋ ହାତରେ ଗଲାଣି ମଉଳି,
ମୋର ଆଜି ଲୋଡ଼ା ନାହିଁ
ଚିକେନ-ତନ୍ଦୁରୀ,
ମୋ ଛାତିରେ ଭୁଷି ଦେଲା
ପ୍ରିୟା ମୋର ଉପେକ୍ଷାର ଛୁରୀ ।

ଈଶ୍ୱର କରନ୍ତୁ, ଆଜି
ତାର ମା' ମରିଯାଉ,
ତାହେଲେ ଅନ୍ତତଃ
ଆଖିରୁ ତା ପୋଛି
ଦେବି ଦୁଇ ଟୋପା ଲୁହ,
ଠିଆ ହେବ ଆସି
ମୋ ଛାତିକୁ ଆଉଜି
ସିଏ ଯେତେବେଳେ !



# ନିୟତି

ଯାଅ ନାହିଁ ସମୁଦ୍ରକୁ ଆଜି,
ସମୁଦ୍ର ପ୍ରବଳ ଉନ୍ମାଦ,
ସମୁଦ୍ରକୁ କାଳିସୀ ଲାଗିଛି ।
ସମୁଦ୍ରର ଢେଉ ସବୁ
ଅତି ଭୟଙ୍କର,
ତୁମକୁ ଭସାଇ ନେବେ
ଅଚାନକ ଡଙ୍ଗା ଓଲଟାଇ
ସମୁଦ୍ରରେ ଆଜି ଖାଲି
ମୃତ୍ୟୁର ଜୁଆର ।

ସମୁଦ୍ରକୁ ଆଜି ଯାଅ
ନାହିଁ,
ଅଛି ଝଡ଼, ଅଛି କଳାରାତି,
ତୁମକୁ ଗ୍ରାସିଯିବେ
ଅହଙ୍କାରୀ ଢେଉମାନେ
ଆସି,
ମାଛମାନେ ପଳାତକ ଆଜି ।

ସମୁଦ୍ରରେ ବିପୁଳ ବିକ୍ଷୋଭ,
ଭାସିଯିବ ସମସ୍ତ ଜାଲ
ଶୀତରାତି ଜଗି ରହିଥିବ
ମୃତ୍ୟୁ ପରି ସାଗର ଗର୍ଭରେ ।
ଜଳରାଶି ପ୍ରଚଣ୍ଡ ଉତ୍ତାଳ,
ଢେଉସବୁ କ୍ରମାଗତ ଉଠୁଛି ସ୍ୱର୍ଗକୁ
ଘର ତାଙ୍କ ଯଦିଓ ପାତାଳ
ତୁମେ କଣ ମନା ମାନିବନି
ତୁମକୁ ଡାକୁଛି ନିୟତି,
ବିସ୍ଫୋରକ ଶୀତ ରାତି
ଡାକୁଛି ପାଖକୁ,
ବ୍ୟର୍ଥ ହେବ ସମସ୍ତ ମିନତି ?

ସମୁଦ୍ର ବିନା ଜୀବନଟା
ଲାଗୁଛି ଅଲଣା,
ତୁମ ଦେହେ ଢେଉର ଗହଣା,
ବୁଡ଼ି ଗଲା ଡଙ୍ଗା ତୁମ
ଅତଳ ପାଣିରେ ।
ଫେରିଗଲା ସମୁଦ୍ର-ସାରସ
ବେଳ ଥାଉ ଥାଉ,
ତୁମେ କିନ୍ତୁ ଫେରିଲନି ଆଉ ।

ତୁମେ ଆଉ ଦେଖିବନି,
ସୂର୍ଯ୍ୟ ନିତି କେମିତି

ଉଠୁଛି,
ସମୁଦ୍ର ଫେରେଇ ଦେବ
ନିଶ୍ଚେ ଦିନେ ବିପର୍ଯ୍ୟସ୍ତ ଦେହ,
ତୁମ ପାଇଁ ଶୋକ ଆଉ
କେହି କରିବେନି,
ଏଥିରେ ତିଳେହେଲେ ନାହିଁ ସନ୍ଦେହ,
ଶୋକସଭା କେବଳ କରିବେ
ସମୁଦ୍ର ମଝିରେ
ଅବାଞ୍ଛିତ ଢେଉମାନେ
ଗୋଲ୍ ହୋଇ ବସି ।



# ପ୍ରଶ୍ନ

ବିପରୀତ ଦିଗରୁ ଆସୁଥିବା
ପ୍ରତ୍ୟେକେ ପଚାରନ୍ତି, ମୁଁ କେମିତି ଅଛି ?
ମୋର ସ୍ୱାସ୍ଥ୍ୟ ଜାଣିବାକୁ ପାଣିପାଗ
ଅଫିସ୍‌କୁ ପଚାରୁ ନାହାନ୍ତି
କାହିଁକି ?
ମୋର ସ୍ୱାସ୍ଥ୍ୟ କଣ ବନ୍ଧା ଅଛି
ହୃତ୍‌ପିଣ୍ଡ ଆଉ ଧମନୀରେ
କେବଳ ?

ମୁଁ ବୁଝିପାରୁ ନାହିଁ
ମୋର କଣ କରିବା ଉଚିତ
ଏହି ମୁହୂର୍ତ୍ତରେ ।
ରାମା, ଦାମା, ଶାମା ଠାରୁ
ମୁଁ କଣ ଅଧିକ ସୁଖୀ, ନା
ବେଶି ସ୍ୱଚ୍ଛଳ ?

ମୁଁ ଭାବୁଛି ଫୁଟ୍‌ପାଥ ବଦଳାଇ
ଖୁବ୍ ଜୋର୍‌ରେ ଚାଲିବି ଏଥର, ଏବଂ
ପଞ୍ଜାବୀ ଫିଙ୍ଗି ପିନ୍ଧି ନେବି
ଗୋଟାଏ ସାର୍ଟ, ଯା'ର ରଙ୍ଗ
ଆକ୍ରୋଶ ପରି ଲାଲ୍, ଆଉ 'କଲର'
ଟେକା ଥିବ ଅସହିଷ୍ଣୁ ଭାବରେ
ଉପରକୁ ।

ମୁଁ ଆଉ କେଉଁଆଡ଼କୁ
ଅନାଁଇବିନି,
ନା ବାଁ ନା ଡାହାଣକୁ ।

ରାସ୍ତାର ଓଲଟା ଆଡୁ ଆସୁଥିବା
କେହି କଣ ମୋର ମନ
ସମ୍ପର୍କରେ କିଛି ପଚାରିବେ
ନାହିଁ ?
କେହି କଣ ମୋତେ ଟାଣି ନେଇ
ରାସ୍ତା ତଳକୁ ଓହ୍ଲାଇ ଯାଇ
ପାଖର ଗଛ ଛାଇରେ
ଛାତିକୁ ଆଉଜାଇ, ଅସୀମ
ମମତାରେ ମୋ ମୁହଁକୁ ଅନାଁଇ
ଉତ୍କଣ୍ଠାରେ ଆଛନ୍ନ ସ୍ୱରରେ
ପ୍ରଶ୍ନ କରିବେ ନାହିଁ, ମୁହଁ
ଏତେ ଶୁଖିଲା ଦିଶୁଛି କାହିଁକି ?
ଆଖି ତଳେ ଅନିଦ୍ରାର କାଳି,
ସତରେ କଣ ଶୋଇପାରୁ ନାହିଁ ?
ମୋର କଣ କାନ୍ଦିବା ଉଚିତ
ଥିଲା ସେହି ମୁହୂର୍ତ୍ତରେ ?
ବୁଝିପାରୁ ନାହିଁ ।



# ସତୁରୀ ବର୍ଷର ଯୁବା

ଦାନ୍ତ ମୋର ନାହିଁ ଗୋଟେ ହେଲେ,
କିନ୍ତୁ ମାଂସ ଚୋବାଇ ପାରେ
ସ୍ୱଚ୍ଛନ୍ଦରେ,
ମାଢ଼ିରେ ମାଡ଼ି ମାଡ଼ି, ପାକୁଳି ପାକୁଳି ।
ଆଖିରେ ମୋ ଚାଳିଶା ଚଷମା
ହାତର କଳା ଛତା ହେଲାଣି ଧୂସର
ହୃଦୟରେ ଝରୁଥିଲା ଏକଦା
ବିଷାଦ ପରି ଅଜସ୍ର ତୁଷାର ।
ଠିକ୍ ଏତିକିବେଳେ
ସମୟ ଏକ ଗୁଣିଆ ପରି
ଝାଡ଼ି ଦେଲା ମୋ ଦେହ-ମନକୁ,
ମନ୍ତୁରା ପାଣି ଛାଟି ଦେଇ ।

ମନ ମୋର ପାଲଟିଲା ତୁରଙ୍ଗର ଘୋଡ଼ା,
ଡରେ ନାହିଁ ବିପଦକୁ,
ସବୁବେଳେ ଆଗଭର ଦୌଡ଼ିବାକୁ
ଗୋଡ଼ ଟେକି ଦେଇ ।
ବେଳେ ବେଳେ ହୃଦୟରେ
ସ୍ମୃତି ଆସି ଉଙ୍କି ମାରିଯାଏ,

ସମୟର ଉଜାଣିରେ ପହଁରି ପହଁରି
ପହଞ୍ଚେ କୈଶୋରର ବେଳାଭୂମି ପାଖେ,
ଯେଉଁଠି ହାତ ଧରି କିଏ ସେ କିଶୋରୀ
ଡବଲବେଣୀକୁ ଛାଟି ହସି ହସି
ଭିଡ଼ିନିଏ ମୋତେ ?

ସ୍ମୃତିର ଧୂସର ମୋଡ଼ରେ
ଦେଖାହୁଏ ଅନେକଙ୍କ ସଙ୍ଗେ
ସେମାନେ ମୋ ସାଙ୍ଗ-ସାଥୀ,
ସମ-ବ୍ୟଥୀ ମୋର,
ଖୋଲିଯାଏ ପୁରାତନ ଗଳ୍ପର ଡୋର
କଥା ଆଉ ଜମ୍ମା ସରେ ନାହିଁ ।
ସମବେତ କୋଳାହଳ ଥରେ ଥମିଗଲେ,
ଭୁଲିଯାଇ ସବୁ ପ୍ରତିଶ୍ରୁତି,
ମୁଁ ପୁଣି ସଜାଡ଼େ ନିଜକୁ
ଝାଡ଼ି-ଝୁଡ଼ି ହୋଇ ।
ସ୍ମୃତିର ତାଳି-ପକା ଉଷୁମ ରେଜେଇ
ଘୋଡ଼ି ହୋଇ ଖାଲି ଶୋଇ ରହେ ।
ଇନ୍ଦ୍ରଧନୁ ଭାଙ୍ଗିଯାଏ
ଖଣ୍ଡ ଖଣ୍ଡ ହୋଇ,
ଇତିହାସ କହେ, କେହି ଜଣେ
ଭଲ ପାଉଥିଲା ମୋତେ ଦିନେ,
ରଖିଥିଲା ଧରି ମୋତେ
ନିବିଡ଼ ତା ଆଖି ପଲ୍ଲବରେ ।

ମୁଁ କିନ୍ତୁ ସବୁଜ ଆଜି,
ଏ କିଛି ସ୍ମୃତିର ରୋମନ୍ଥନ ନୁହେଁ,
ଜୀବନର ପୃଷ୍ଠା ସବୁ
ଖୋଲିଯାଏ ଗୋଟି ଗୋଟି ହୋଇ,
ସତେଜ ପାଣ୍ଡୁଲିପି ପବନରେ ଉଡ଼େ ।
ଦିଗନ୍ତରେ ଝଲସୁଛି ସଫଳ ସୂର୍ଯ୍ୟାସ୍ତ
ଏକ ଗୋଧୂଳି ରଙ୍ଗର ।
ସେ କିନ୍ତୁ ଜାଣେ ନାହିଁ
ମୁଁ ପାଲଟିଛି କବି ବୋଲି,
ଦିଗନ୍ତରୁ ଅନାୟାସେ
ଧରି ପାରେ ଜହ୍ନ ।
ସେ କିନ୍ତୁ ଜାଣେ ନାହିଁ
କବିତାକୁ ଦୂତ କରି ପଠାଉଛି
ତାହାରି ପାଖକୁ ।
ସେ ଆଜି ବହୁତ ଏକା
ଆଖିରୁ ତା ଝରୁଅଛି
ଲୁହ ପରି ନୀରବତା ଖାଲି,
କବିତା କଣ ଏ ଲୁହକୁ
ପାରିବନି ପୋଛି,
ତାର ମାୟାବୀ କାନିରେ ?



# ନୀଳଶିରା

ଦିଶୁଅଛି ନୀଳଶିରା ଗାଲରେ
ତୁମର,
କାନରୁ ଲମ୍ବିଛି ଯାହା
ଅବିରଳ ବର୍ଷା ଧାରା ପରି ।
ମୁହଁ ତୁମ ଟୋପା ଗୋରା
ନୀଳଶିରା ଜ୍ୱଳୁଛି ତହିଁରେ ।

ଏ ତୁମର ଜନ୍ମଗତ ଦାଗ,
ତିଳ ଚିହ୍ନ କିମ୍ବା କଳାଜାଇ
ପରି,
ତକିଆରେ ମୁହଁ ମାଡ଼ି
ଶୋଇଲେ ବି ନୀଳ ଶିରା
ସମ ଦୀପ୍ୟମାନ,
ଗୋରା ଗାଲ ଈଷତ୍
ରକ୍ତିମ ଦିଶେ ରକ୍ତ ଜମିବାରୁ ।

ନୀଳ ଶିରା ଓହ୍ଲାଇଛି କାନଠାରୁ
ବେକ ବରାବର,
ତାପରେ ସାପପରି
ଛାତିର କୌସ୍ତୁଭ ମଣି କରିଛି ବେଷ୍ଟନ ।

ତୁମେ କଣ କରିଅଛ ଅଭିମାନ,
ହେ ବାଳିକା, ତୁମ ପ୍ରିୟ କବିର ଉପରେ
ଚୂର୍ଣ୍ଣକୁନ୍ତଳରାଜି କମ୍ପମାନ
ତୀବ୍ର ଆବେଗରେ ?

ବିରଳ ତୃଣଭୂମି ନାଭିପଦ୍ମ ତଳେ
ମୁଁ ଚିହ୍ନିଛି ତାକୁ,
ଆଉ ଯାହା ଜାଣିଅଛି
ସେ କଥା ଆଜି କହିବିନି ।

ନୀଳଶିରା ପୁଣି ଦୃଶ୍ୟମାନ
ଜାନୁର ଜଟିଳତା ଭେଦି,
ଶୋଇଛି ସେ ମଗ୍ନ ଆରାମରେ,
ତିଳେ ହେଲେ ଆବିଳତା ନାହିଁ,
ଫୁଲର କୋରକ ଭଳି ମୁଦ୍ରିତ
ମ୍ଳାନ କୁହୁକରେ ।



# ପ୍ରିୟାର ଘର

ମୁଁ କ୍ରମଶଃ ପ୍ରେମରେ ପଡୁଛି,
ମୋ ଆଗରେ ହଜାରେ ଦୀର୍ଘଶ୍ୱାସ,
ଭୋକ, ଓପାସ, ଦାରିଦ୍ର୍ୟ, ବେକାରୀ ଆଉ
ହତାଶା ପରି ନିଷ୍ଠୁର ନିୟତି ।

ସମୁଦ୍ର ଫେରାଇ ଦିଏ
ଶାମୁକା, ଅଣି-ଦୋଅଣି,
ତୁମେ କଣ ଶୁଝି ଦେବ
ମୋ ପ୍ରେମକୁ ନିର୍ଭୁଲ ଅଙ୍କରେ ?
ଜୁଲିଏଟ୍ ଫେରାଇ ପାରିଛି
ପ୍ରେମ ରୋମିଓର, କିମ୍ୱା
ଲୟଲା ମଜନୁର ?
ସର୍ବଶେଷ ଫେରାଫେରି
ଆମ ଗାଁ ପାଖେ,
ଗୌରୀ ପାରିଛି କି କେଦାରର
ପ୍ରେମ ଲେଉଟାଇ ?

ତୁମେ କେଭେ ଫୁଲର ଭାଷ୍ୟ
ପଢ଼ିପାରି ନାହଁ,
ଦେଖିନାହଁ ଆଖି ମେଲି
ପାଖୁଡ଼ାରେ କଣ ଲେଖା ଅଛି,
ଲେଖାଥାଏ ଅନେକ କବିତା
ଫୁଲଙ୍କ ଦେହରେ, ଛନ୍ଦୋବଦ୍ଧ
ଅଥବା ବିଚ୍ଛନ୍ଦ,

ପଢ଼ିବାକୁ ଦରକାର ଉପଯୁକ୍ତ
ଆଖି,
ସେ ଆଖି ତୁମର ନାହିଁ
ଦୀର୍ଘ ଆଖି-ପଲ୍ଲବ ଯଦିଓ ।

ମୁଁ କାହିଁକି ଦେଖିଲି ସ୍ୱପ୍ନ
ରାତି ବାରଟାରେ
ତୁମେ ମୋତେ ଭଲପାଅ
ବୋଲି ?
ଦୀର୍ଘ କୋଡ଼ିଏ ବର୍ଷ
ଆତ୍ମହତ୍ୟା କରିପାରି ନାହିଁ ।
କେବଳ ଏହି କଥା ଭାବି ।

ବାଟରେ ହଜାର ବାଧା
କବାଟରେ ଲୁହାର ଶିକୁଳି,
ଅସଂଖ୍ୟ ଆଖିର ନିଷେଧ
ଭର୍ତ୍ସନା କରୁଛନ୍ତି
ଦିନରାତି ଧରି ।
ଆକାଶରେ ଅନେକ ଝଡ଼,
ଆମକୁ ଉଡ଼ାଇ ନେବ
ଅଲୋଡ଼ା ଝରାପତ୍ର ପରି ।

ପୃଥିବୀରେ ବିପୁଳ ଅନ୍ଧାର
ହଜାର ହଜାର ଅମାନିଶା,
ହଜାଇବା ଆମେ ଯଦି
ଦିଶା,

ତାହେଲେ ମାନି ନେବା
ଖାଲି ପରାଜୟ,
କାହିଁକି ଅନ୍ଧାରରେ
ଲୁଚାଇଛ ମୁହଁ ?

ତୁମ ଘରର ଠିକଣା
ପାଉନାହିଁ ଖୋଜି,
ଯଦିଓ ତା ଲେଖା ଅଛି
ଚଢ଼େଇଙ୍କ ଓଠରେ କେବଳ,
ମୁଁ ଠିକ୍ ପହଞ୍ଚିଯିବି
ବାଧା ମାନିବିନି
ପଢ଼ି ନେବି ସେ ଠିକଣା
ସଠିକ୍ ଭାବରେ ।
ତୁମ ଘର ରାସ୍ତାର ଏତେ ଧୂଳି
କେଉଁଠୁ ଆସିଲା ?
କାଲି କଣ ବର୍ଷା
ହୋଇନାହିଁ ?
ବାଟଯାକ ବିଛାଡ଼ି ପଡ଼ିଛି
ଧୂସର ଧୂଳିରେ
ପ୍ରେମର ପାଖୁଡ଼ା ସବୁ
ହଜାରେ ମଲ୍ଲି ଫୁଲ ପରି ।



# ପ୍ରେମ୍, ଏକ ମିନିଟ

ଦୂରଦର୍ଶନର ବିଜ୍ଞାପନ,
ପ୍ରେମ ବିକ୍ରୀ ହେଉଛି
ପ୍ୟାକେଟରେ,
ପ୍ରେମ— ତତ୍‌କ୍ଷଣାତ୍
ପ୍ରେମ— ଏକ ମିନିଟ,
ପ୍ରେମ ପାଇଁ ନଷ୍ଟ
କର ନାହିଁ, ଦୁର୍ମୂଲ୍ୟ ସମୟ ।
ସମୟ ଲାଗିବ ନାହିଁ ମୋଟେ,
ପ୍ରେମ ପାଇଁ ।
ପ୍ରେମ ମିଳିପାରେ ସହଜ
ମାସିକ କିସ୍ତିରେ, କିମ୍ବା
ନଗଦାନଗଦ, ଯାହା ତୁମ
ମନକୁ ପାଉଛି ।
ଟୁଥ୍‌ବ୍ରାଶରେ ଦାନ୍ତ ଘଷି
କୁଳି କରୁ କରୁ ଚାହିଁବା
ମାତ୍ରକେ ପ୍ରେମ ଆସି ହାଜର ।
ପ୍ରେମ ପାଇଁ ଦରକାର ନାହିଁ
ଅଯଥା ଯନ୍ତ୍ରଣା,
ତୃତୀୟ ବିଶ୍ୱର ସବୁ ଉନ୍ନତିକାମୀ
ଯୁବକ ଯୁବତୀ ଖାଲି ଆଖି ବୁଜି
ପ୍ରେମ କରିଯାଅ ।

ଏଡ଼ସ୍, ଗର୍ଭପାତ ଅଥବା ନିରୋଧ
ଏ ସବୁ ପୁରୁଣା କଥା
ପୋଛି ଦିଅ ମନର ଖାତାରୁ,
ଦାରିଦ୍ର୍ୟର ସୀମାରେଖା ତଳେ
ଆଉ ଶୋଇ ରହ ନାହିଁ ।
ଲଗାମ-ହୀନ ଘୋଡ଼ା ଭଳି,
ନାଚିକୁଦି ପ୍ରେମ କର,
ମନର ସୁଖରେ ।
ବାପ- ମାଙ୍କ ଭର୍ତ୍ସନାଭରା
ତିର୍ଯ୍ୟକ ଚାହାଣୀ ଭୁଲିଯାଅ,
ଜହ୍ନରାତି, ଫୁଲତୋଡ଼ା, ରେଶମୀ ରୁମାଲ
ପୋତି ଦିଅ ସମୁଦ୍ର ବାଲିରେ ।
ଏ ସବୁ ପୁରୁଣା କଥା
ଆଉ କୁହ ନାହିଁ ।
ମୋହନୀୟ ପ୍ୟାକେଟରେ ପ୍ରେମ
ମିଳୁଅଛି—ଚଟାପଟ ପ୍ରେମ ।
ମ୍ୟାଗି ନୁଡ଼ଲସ୍ ଭଳି ଭରି ନିଅ
ଭ୍ୟାନିଟି ବ୍ୟାଗରେ ଅଥବା
କୋଟ ପକେଟରେ ତୁମର ।
ଭଲ କରି ଚିହ୍ନି ନିଅ ପ୍ରେମର ପ୍ୟାକେଟ
କିଣିବା ଆଗରୁ ।
ଧର୍ଷଣର ଲୋଭନୀୟ ପ୍ୟାକେଟଟା
ଭୁଲ୍ କରି କିଣି ନାହଁ ତ ?
ପ୍ରେମ ଏକ ମିନିଟ ।



# ନିରର୍ଥକ

ପାନ-ପିକ ବୋଳି ହୋଇ
ସୂର୍ଯ୍ୟ ଉଠେ ଦିଗନ୍ତରେ ।
ସେ କ୍ରମଶଃ ଉଠୁଛି ଆହୁରି
ଉପରକୁ,
ଠିକ୍ ଆକାଶ ମଝିକୁ
ବରାବର ନିଁଆରେ ପୋଡ଼ି
ଦେବ ବୋଲି ।

ମୋ ପାଖରେ କଣ ଅଛି
ଆଞ୍ଜୁଳାଏ ସ୍ତବ୍ଧତା ଛଡ଼ା,
କଣ ବା ଦେବି ପାଖକୁ
ଆସିଲେ ?
କବିତାର ମାନେ କଣ,
ମୁଁ କଣ କହିବି ?
ସହଜ କାମ ନୁହେଁ
କବିତାର ଗ୍ରନ୍ଥି ଫିଟାଇବା, କିମ୍ବା
ଅଭିଧାନ ଦେଖି ଦେଖି ମାନେ
ଖୋଜିବାରେ ।
କବିତା ନ ଥାଏ କାହିଁ
ଅଭିଧାନ ପୃଷ୍ଠାରେ ଲୁଚି ।
କବିତା ବୁଡ଼ିଥାଏ ଚିର-ରହସ୍ୟରେ ।

କାଞ୍ଜିଆହୋଦାର ଗାଈମାନେ
କ୍ଷୀର ଦିଅନ୍ତିନି, ଅଥଚ
ନାନାବାଈଆ ଗୀତ ବୋଲି
ନାରୀମାନେ ଶୁଆନ୍ତି ଶିଶୁଙ୍କୁ
ବିଧବା-ଆଶ୍ରମରେ ନିତି ।
ଘାସ, ଲତା, ଗୁଳ୍ମ ଦେହରୁ ଓପାଡ଼ି
ପଥର ପାଲଟି ଯାଇଛି ଅହଲ୍ୟା ପରି
ଏହି ମୁହୂର୍ତ୍ତରେ ।
ଆଉ କେତେଦିନ ଅପେକ୍ଷା କରିବି
ତୁମ ସ୍ପର୍ଶକୁ ?

ପୃଥିବୀରେ ବଞ୍ଚିବାକୁ ହେଲେ
କିଛି ରବିଶଙ୍କର, ଜୀବନାନନ୍ଦ ଆଉ
କିଛି ପାଗଳଙ୍କ ପ୍ରୟୋଜନ,
ଯେଉଁମାନେ ଜହ୍ନର ମୁହଁରେ ବ୍ରଣ
ହୋଇଛି ବୋଲି ଉପଯୁକ୍ତ ମଲମର
ସନ୍ଧାନରେ ଆକୁଳ ହୋଇ ବୁଲୁଛନ୍ତି ।



# ଟାଙ୍କି ପଛରେ ସୂର୍ଯ୍ୟାସ୍ତ

ସହରକୁ ଶୀତ ଆସେ
ତିବ୍ବତୀ ସୋୟେଟର ପିନ୍ଧି,
ରାସ୍ତାକଡ଼ ଉଠା ଦୋକାନରେ
ବିକା ହୁଏ ଉଲ-ସୂତା, ଗଞ୍ଜି, ମଫଲର ।

ଏଠି ମିଳେ ନାହିଁ ଫୁଲର
ପରିଚିତ ଘ୍ରାଣ,
ପଳାତକ ବିବ୍ରତ ଫଗୁଣ,
ଚାରିଆଡ଼େ ଭୀଷଣ କାଦୁଅ,
ନୀଳ ପାଣି ବହି ଯାଏ
କୁଳୁ କୁଳୁ କରି ।
ଧୂଳି, ଧୂଆଁ, କୁହୁଡ଼ିରେ ଘାରି
ହୋଇ ସହର ଶୋଇଛି ।
ଏ ସହରର ଅନ୍ଧାରୀ ଦେହରେ
ଆଲୁଅର ଛଉ ଦାଗ
ନିହାତି ଅଶ୍ଳୀଳ ଦିଶୁଛି ।

ସହରରେ ଗ୍ରୀଷ୍ମ ଆସେ,
ପିଚୁ ତରଳି ଯାଏ ରାସ୍ତାର,
ଅଟକି ଯାଏ ହବାଇ ଚପଲ
ଅଚାନକ ।

କୁକୁରଙ୍କ କୋଳାହଳ ସ୍ତବ୍ଧ
ହୋଇଯାଏ,
ଷଣ୍ଢମାନେ ମଗ୍ନ ହୁଅନ୍ତି
ପ୍ରାତ୍ୟହିକ ରୋମନ୍ଥନରେ ।
ଗିଲାସ ବଢ଼ାଇ ଦିଏ
ତୃଷ୍ଣାର୍ତ୍ତ ବାଟୋଇ ଆଡ଼େ
କେହି ଜଣେ,
ଲାଲିଆ ସାଲୁ କନା
ଈଷତ୍ ଆଢ଼େଇ,
ମାଠିଆ ମୁଁହରୁ ।

ଟବରେ ବସନ୍ତ ଆସେ
ଛାତରେ ଛାତରେ
ସେ ବା କେତେ ଛାଇ ଦେବ
ଚାଖଣ୍ଡେ କ୍ରିସେନ୍ଥିମାମ୍
ଅଳ୍ପ ଟିକେ ବିଳାସିତା
ବାଣ୍ଟି ପାରେ ସିନା ?
ଆମେ ସବୁ ସାନ ସାନ
ଦ୍ୱୀପର ବାସିନ୍ଦା, କ୍ଷୁଦ୍ର କ୍ଷୁଦ୍ର
ଭୂଖଣ୍ଡର ଅଧିକାରୀ ।
କଂକ୍ରୀଟର ପଞ୍ଜୁରୀରେ ଆମେ
ସବୁ ପ୍ରତ୍ୟେକେ ଚଢ଼େଇ,
ରଙ୍ଗ ଆମ ଯଦିଓ ବିଭିନ୍ନ ।

ଗୁଚ୍ଛ ଗୁଚ୍ଛ ଭୂମିକମ୍ପ
ଏଠି ସେଠି,
ବସ୍ତି ପାଖେ କ୍ରୂର ଅନ୍ଧାରରେ
ରଙ୍ଗ ବୋଲି ଠିଆ ଥାନ୍ତି
କିଛି କିଛି ନାରୀଙ୍କ କଙ୍କାଳ,
ଚୋଲି ପଛରେ କଣ ଥାଏ
କ୍ଲେଦାକ୍ତ ହାହାକାର ଛଡ଼ା ?
ପାଣି ଟାଙ୍କି ପଛ ପଟେ
ସୂର୍ଯ୍ୟ ଅସ୍ତ ଯାଏ,
ସହର ପଡ଼ି ରହେ ଶବ ଭଳି
ମୁହଁ ଢାଙ୍କି କଳା ଚଦରରେ ।



# କାଚ

କାଚ ବଡ଼ ଭଙ୍ଗୁର,
ମୁହୂର୍ତ୍ତିକେ ଭାଙ୍ଗିଯାଏ
ଝଣ୍ ଝଣ୍ କରି ।
ଯଦିଓ ଭାଙ୍ଗିବା ଶବ୍ଦ
କାନକୁ ମଧୁର ଶୁଭେ
କ୍ଷଣସ୍ଥାୟୀ ହେଲେ ମଧ
ସୁମିଷ୍ଟ ଯଥେଷ୍ଟ ।

ପୃଥିବୀର ସବୁ ଫେବିକଲ
ବ୍ୟର୍ଥ ହୁଏ କାଚ ଯୋଡ଼ିବାରେ
କାଚର ଦେହଯାକ ସମ୍ପର୍କର
ଫଟା ଦାଗ ପରିଷ୍କାର
ବାରି ହୋଇପଡ଼େ ।
ନିହାତି ସୁକୁମାରୀ ଏ କାଚ,
ଦେଖୁ ଦେଖୁ ଧୂଳି ହୋଇଯାଏ
ସମ୍ପର୍କର ସମସ୍ତ ପାହାଚ,
ଗୋଟି ଗୋଟି ହୋଇ
ଅତର୍କିତେ ଟିକେ ବାଜିଗଲେ ।

ଦୀର୍ଘଶ୍ୱାସ ପଡ଼ି ରହେ
ଭଙ୍ଗା-ଦେଣା ନିଷ୍ପାପ
ଚଢ଼େଇ,

ପଡ଼ିଥାଏ ମିଥ୍ୟା ପ୍ରତିଶ୍ରୁତି
ଗଳିର ମୋଡ଼ରେ ।
ତୁମେ ମୋତେ କଥା ଦେଇ
କଥା ରଖିଲନି, ଦେଖା ହେବ ବୋଲି ।
ଅଳିନ୍ଦରେ ଠିଆ ଥିବା
ମାର୍ବଲ ପରୀକୁ ଭାବିଲ
ପହରାରେ ଥିବା ଜଗୁଆଳୀ ?
ପ୍ରବଳ ଗରଳ ଅଛି
ବାସୁକୀ ଫଣାରେ, ଭୁଲ୍ ନାହିଁ ।

ନଈ ପାଣି ଅତ୍ୟନ୍ତ ଦାଢୁଆ
ବହିଯାଏ ଅନର୍ଗଳ ଶୋଣିତର ଧାରା
ପ୍ରାନ୍ତରରୁ ମରୁଭୂମି ଆଡ଼େ,
ଏ ନଈରେ ନାଆ ଭାସେ ନାହିଁ ।

ସମ୍ପର୍କ ଭାଙ୍ଗିଯାଏ
ଗୋଟି ଗୋଟି କରି,
ଝଣ୍ ଝଣ୍ ଶବ୍ଦ ଶୁଭେ
କାଚ ଭାଙ୍ଗିବାର,
ସାରାଦିନ, ସାରା ରାତି ଧରି ।



# କବିତା ଫେରି ଆସୁ

କବିତା ମୋତେ ଛାଡ଼ି
ଚାଲି ଯାଇଛି ଦୂରକୁ,
କେଉଁଠି ହେଲେ ମୋ
ଲେଖାରେ ତା ଉପସ୍ଥିତି
ବାରି ହେଉ ନାହିଁ ।
ଲେଖାର ଧାଡ଼ିସବୁ
ମୃତ ଅଜଗର ଭଳି
ପଡ଼ି ରହିଛନ୍ତି ଦିଗନ୍ତକୁ
ଆଉଜି ।
କିମ୍ବା ଲୁହାର ରେଳ ଧାରଣା
ସେମାନେ କଠିଣ ଏବଂ ନିସ୍ପୃହ ।
ସେମାନଙ୍କ ବିପୁଳ ବିସ୍ତୃତି
ଅର୍ଥହୀନ ଭାବରେ ଦୀର୍ଘ
ଓ ବ୍ୟର୍ଥ ।

ଏ ସବୁ ଧାଡ଼ିରେ ତାର
ଅବୟବ ଦୃଶ୍ୟମାନ ନୁହେଁ
କିନ୍ତୁ ମୋ କବିତା ଉପରେ
ପଡ଼ିଥିଲା ଜନୈକ ନାରୀର ଛାଇ ।

ସେ ହାତରେ ଦର୍ପଣ ଧରି
ପ୍ରସାଧନରତା, କୋଣାର୍କର
କାଛରୁ ଯେପରି ସେ ଓହ୍ଲାଇ
ଆସିଛି ଏହି ମୁହୂର୍ତ୍ତରେ ।
ବୟସର ଅଳଗୁଣୀରେ ତାର
ସୁଡ଼ୌଲ ସ୍ତନ, ତିର୍ଯ୍ୟକ ଗ୍ରୀବା,
ନିବିଡ଼ ଆଖି ପଲ୍ଲବ ଆଉ
ବିପୁଳ ଅଳକ ରାଶି
ଟଙ୍ଗା ହୋଇଛି ଅଳସ ଭଙ୍ଗୀରେ ।
ପ୍ରତିଟି ଶବ୍ଦ ପାଖରେ
ନତଜାନୁ ହୋଇ ମୁଁ
ବର ମାଗିଛି ।
କହିଛି ନିର୍ଜୀବ ଧାଡ଼ିରୁ
ରୂପାନ୍ତରିତ ହୁଅନ୍ତୁ କବିତାରେ
ସେମାନେ ।

କବିତା ପୁଣି ଫେରି ଆସୁ,
ପ୍ରତୀକ୍ଷାର ଅବସାନ ଘଟୁ
ଏଥର,
ଗର୍ଜମାନ ଅମାନିଶାର ପେଟ ଚିରି
ଜନ୍ମଲାଭ କରୁ ଏକ
ସଫଳ ସକାଳ,
ସୂର୍ଯ୍ୟ ପରି ଉଜ୍ଜ୍ୱଳ ।



# ସନ୍ଧ୍ୟା-ରାଗିଣୀ

ଶବ୍ଦ ନେଇ ଖେଳୁଛି ମୁଁ
ଅନେକ ଦିନରୁ
ଶବ୍ଦ ପାଖେ ମୋର ଋଣ
କ୍ରମଶଃ ବଢୁଛି ।
ଶବ୍ଦ ମୋତେ ଚିହ୍ନାଇଛି
ଅଜଣା ଫୁଲଙ୍କୁ,
ଶବ୍ଦ ମୋତେ ନେଇଗଲା
ହାତ ଧରି ନଈ ପଠା ପାଖେ,
ଯେଉଁଠି କାଶତଣ୍ଡୀ ବଣରେ
ଭାଙ୍ଗୁଛି ଲହଡ଼ି ।
ଝୁଲୁଛି ଜହ୍ନର ଦେହ
ବାଉଁଶ ବୁଦାରେ,
ଜହ୍ନ ଲଟକିଛି ଏଠି
କିଛି ବେଳ ପାଇଁ
ସେ ପୁଣି ଧୀରେ ଧୀରେ
ଉଠିଯିବ ଆକାଶ ମଝିକୁ ।

ନଈ ଭଳି ଉଚ୍ଛଳ
ବାଳିକା ସେ,
ପ୍ଲାଷ୍ଟିକ୍ ପ୍ରଜାପତି ମୁଣ୍ଡରେ
ନାଇଛି,
ସେ ନିତି ଖେଳୁଛି ଚଟା
ମୋ ଘରର ଅଗଣାରେ ଆସି,
ମୁଁ ତାକୁ ଶିଖାଇବି
କେମିତି ଗଢ଼ି ହୁଏ
କାଗଜର ଡ଼ଙ୍ଗା
କେମିତି ଫୁଙ୍କି ଦେଲେ
ଫୁଲି ଉଠେ ରଙ୍ଗୀନ୍ ବେଲୁନ ।
ମୁଁ ତାକୁ ବୁଝାଇବି ବର୍ଷା
ଲାଗି ପ୍ରତୀକ୍ଷା କରିବାକୁ
ବର୍ଷା ନ ହେଲେ
ଡଙ୍ଗା ଭାସିବ କେମିତି ?
ବେଲୁନ୍ ବି ଫାଟି ଯିବ
ବେଶି ଫୁଙ୍କି ଦେଲେ ।
ସେ ଝିଅକୁ ଦିନେ ପୁଣି
ବାଟରେ ଭେଟିଲି,
ରାସ୍ତାର ପାଣି-କଳ ପାଖେ,
ବସି ବସି ମାଜୁଛି ସେ
ଗଦାଏ ବାସନ,
ନାକରୁ ତା ବୋହୁଛି ସିଙ୍ଘାଣି ।

ଏ ସବୁ ମୋ ମିଳା ଦିନ କଥା
ନାମ-ଗୋତ୍ରହୀନ
ମନେ ପଡ଼େ ଧୂସର ସ୍ମୃତିରେ ।

ମୋ ରକ୍ତରେ ନାଆ ଭାସେ ଆଜି,
ଆହୁଲାର ଛପ୍ ଛପ୍ ଧ୍ୱନି
ନାଆ ମଙ୍ଗ ପଶି ଆସେ
ଅଚାନକ ଛାତି ଭିତରକୁ
ଏ କାହାର ନାଆ, ଆସୁଛି କେଉଁଠୁ
ଅର୍ବାଚୀନ ପରି ?
ସୋ-କେସର ସମସ୍ତ କଣ୍ଢେଇ
ଆଜି କିନ୍ତୁ ପିନ୍ଧିଛନ୍ତି ସାଲୋୟାର
ଶାଢ଼ୀ ବଦଳାଇ ।
ସେମାନେ ଓହ୍ଲାଇ ଆସି
ରାସ୍ତାରେ ହୋଇଛନ୍ତି ଠିଆ,
ବାଟୋଇଙ୍କୁ ମାରୁଛନ୍ତି ଆଖି ।

ମାଇଲ୍ ମାଇଲ୍ ବ୍ୟାପୀ
ନଗ୍ନ ନାରୀ ଦେହ
ସହରର କାନ୍ଥରେ କାନ୍ଥରେ,
ଦାରିଦ୍ର୍ୟ, ଜରା-ବ୍ୟାଧି, ବିରହ,
ଓ ଦୁଃଖ-ଅପମାନ ସନ୍ତୁଳି
ଚାଲିଛନ୍ତି ମୋତେ,
ସେମାନଙ୍କ ଦହନ ବେଳେ ବେଳେ

ଅସହ୍ୟ ଲାଗୁଛି,
ଇଚ୍ଛା ହୁଏ ବସି ରହିବାକୁ
ଘାତକ ଅନ୍ଧାରରେ ଲୁଚି ।

ମୁଁ ହେଲି ପ୍ରସ୍ଫୁଟିତ
ଈଷତ୍ ଡେରୀରେ,
ଝରିଗଲା ସମସ୍ତ ବଉଳ
ପ୍ରତିକୂଳ ତୀବ୍ର କୁହୁଡ଼ିରେ ।
ମୁଁ ନେଇଛି ନିର୍ବାସନ
ସହରରୁ କିଛିଦିନ ପାଇଁ,
ସରିଯାଉ ଦାମ୍ଭିକ ଯୌବନ,
ସୋ-କେସର କଣ୍ଢେଇମାନେ
ପରିଣତ ହୁଅନ୍ତୁ ନାରୀରେ,
ମୁଁ ଅବଶ୍ୟ ନିଶ୍ଚୟ ଫେରିବି
ଶେଷ ଗୋଧୂଳିରେ ।



# ଯାଅ ନାହିଁ

ପରମା, ଯାଅ ନାହିଁ
ଅନ୍ଧାର ଆଡ଼କୁ,
ଅନ୍ଧାରରେ ଲୁଚି ଥାଏ ଭୟ,
ଧରି ନେବ ତୁମକୁ ସେ
ତା ଟାଣ ମୁଠାରେ ଜାବୁଡ଼ି ।
ବୁଢ଼ୀଆଣି ଜାଲ ପରି
ବାନ୍ଧିଦେବ ଶରୀରକୁ
ଅନ୍ଧାର କେବଳ ।
ପରମା, ଜହ୍ନ ରାତି ହେଲେ
ଯାଅ ନାହିଁ ନଈ ପଠା ଆଡ଼େ,
ସେଠି ଶୁଭେ ବଂଶୀର ସ୍ୱନ
ସେ ତୁମକୁ ଫୁସୁଲାଏ କୂଳ
ତ୍ୟାଗିବାକୁ,
ବଂଶୀ ବାଜେ କଦମ୍ବ ଡାଳରେ ।

ପରମା ବର୍ଷା ରାତି
ନିରାପଦ ନୁହେଁ,
ଆକାଶରୁ ଅଶ୍ରୁଧାରା ଝରେ,
ଗୋଟା ପଣେ ତିନ୍ତିଯିବ ଦେହ,
ବିଜୁଳି ଓ ଘଡ଼ଘଡ଼ି ଡ଼ରାଇବେ
ନାହିଁ ସନ୍ଦେହ,
ଯାଅ ନାହିଁ ବର୍ଷା ରାତି ହେଲେ,
ପିଚ୍ଛିଳ କାଦୁଅରେ ଖସିଯିବ ଗୋଡ଼ ।

ପରମା, ଅନ୍ଧାରରେ ଅନେକ ନୈଃଶବ୍ଦ୍ୟ,
ରହି ରହି ବିଷାଦର ମେଘ
ଦୁଲୁକୁଛି,
ଛିନ୍ନ ଭିନ୍ନ ଶରୀରରେ
ଶତାବ୍ଦୀ ଶତାବ୍ଦୀ ଧରି
ଏକାନ୍ତରେ ପଡ଼ିଛି ବିରହ,
ଅନ୍ଧାରରେ ରାସ୍ତା କଡ଼ରେ ।
ପରମା, ଯାଅ ନାହିଁ
ଅନ୍ଧାରକୁ ଆଜି ।



# ନୂଆ-ପୁରୁଣା

ଏଥର ମୁଁ ଲେଖିବି
ନୂତନ କବିତା,
ଅର୍ଥାତ୍, ମୁଁ କଣ
ଲେଖୁଥିଲି ପୁରୁଣା କବିତା
ଏତେ ଦିନ ଧରି ?

ନୂତନ ଓ ପୁରାତନ,
ନବୀନ-ପ୍ରାଚୀନ
ଭିତରେ ସନ୍ଧି ବିଚ୍ଛେଦ
କରିବା ଅସମ୍ଭବ ।
ଯିଏ ନୂତନ ସେ ପୁଣି
ପୁରାତନ ସମାନ ଭାବରେ ।
ଲୋକେ ମାନ୍ଧାତା ଅମଳରୁ
ଜହ୍ନକୁ ଦେଖି ଊର୍ଦ୍ଧ୍ୱ ଗ୍ରୀବ
ହୋଇ ଦୀର୍ଘଶ୍ୱାସ ଛାଡୁଥିଲେ,
ଆଉ ନଈର ଗଭୀରତା ସମ୍ପର୍କରେ
କିମ୍ବା ନାରୀ, ଫୁଲ ଓ ମଣିଷର
ଚିନ୍ତା ଭାବନାକୁ ଚେଷ୍ଟା କରୁଥିଲେ
ଫୁଟାଇବାକୁ ଶବ୍ଦମାଳା ଗୁନ୍ଥି ।

ବାଲ୍ମିକୀ ଓ କାଳିଦାସ,
ରାବଣ, ହରିଣ ଆଉ ଅଙ୍ଗୁରୀୟକୁ
ମୁଖ୍ୟ ଚରିତ୍ର କରି ନିସର୍ଗ ଦୃଶ୍ୟ
ଆଙ୍କୁଥିଲେ ପେଲବ ତୂଳିକାରେ ।

ତାପରେ ବହୁ ବର୍ଷ ବିତି ଯାଇଛି
ଚିରନ୍ତନୀ ନାରୀ ହରିଣ ଛାଡ଼ି
ଗେଲ କରୁଛି କୁକୁରକୁ ।
ଲୀଳା କନ୍ଦୁକ ପରିବର୍ତ୍ତେ ଖେଳୁଛି
ଟେନିସ୍ ବଲ୍ ସଙ୍ଗରେ ।
ପ୍ରତି ଗଳିର ଘରେ ଘରେ
ରାଧା ଓ କୃଷ୍ଣଙ୍କ ଅଭାବ ନାହିଁ ।
କଦମ୍ବ କଦମ୍ବ ହିଁ ରହିଛି
କାଳେ କାଳେ ।

ଋତୁଚକ୍ର ଯେମିତି ସେମିତି,
ଆକାଶର ନୀଳ ସାମିୟାନା
ତଳେ ଉଡୁଛି ଶୁଭ୍ର ପାରାବତ ।
କ୍ରୋଧୀ ମେଘମାନେ ଏବେ ବି ଗର୍ଜନ୍ତି ପ୍ରବଳ,
ପ୍ରଜାପତି ବସନ୍ତି ଫୁଲରେ ।
ଅଫିସ୍ ଯାନ୍ତି ନାହିଁ ଅନସୂୟା
ପ୍ରିୟମ୍ବଦାମାନେ ।
ଦେଖା ହୁଏ ନିତି ସେଠି
ପ୍ରମୀଳା ମହାନ୍ତିଙ୍କ ସଙ୍ଗେ,

କେଲକୁଲେଟର ଧରି
ହିସାବ କରୁଛନ୍ତି ।

ମଣିଷର ମନର ଜଙ୍ଗଲ
ଫ୍ରୟେଡ୍ ଓ ୟୁଙ୍ଗ
ଚିହ୍ନାଇଲେ ?
ମୁଁ କିନ୍ତୁ ଜାଣିଥିଲି
ମଣିଷ ମନର କଥା
ମହାଭାରତର ପୃଥୁଳ ପୃଷ୍ଠାରେ
ଲେଖା ଅଛି ।
ଏ ଖାଲି ପ୍ରାଚୀନ ମଦ
ନୂଆ ବୋତଲରେ ।

ଦୋକାନର ସୋ-କେସ୍‌ରେ
ଚରୁଛନ୍ତି ନାନାବିଧ ସୁନାର ହରିଣ,
ଅଫିସରୁ ଫେରି ଦେଖେ
ଗୃହିଣୀ ତାକୁ ହିଁ କିଣିବାକୁ
ଜିଦ୍ ଧରିଛନ୍ତି ।

ରାତିର ଉପକୂଳରେ ଜହ୍ନ ଏକ
ବିରଳ ବୋଇତ,
ସେ କ୍ରମଶଃ ଭାସି ଯାଉଛି
ଗୋପନ ଗୁହା-ଚିତ୍ର ଆଡ଼କୁ ।



# ସାପ

ହେମନ୍ତ ରଙ୍ଗର ସାପ,
ଶୋଇଛି ସେ ପ୍ରଦୋଷ
ବେଳାରେ ।
ଧାନ କଟା ସରିଲାଣି
ଦେହରେ ତା ଲାଗିଅଛି
କୁଟା-କାଠି ଧୂସର ରଙ୍ଗର ।
ସ୍ୱପ୍ନ ଭାଙ୍ଗୁ ନାହିଁ ତାର
ସହଜରେ ।
ତା ଦେହର କାତି ସବୁ
ଗୋଧୂଳିରେ ଚିକ୍ ଚିକ୍
ଦିଶେ,
ହେମନ୍ତ ରଙ୍ଗର ସାପ
ଶୋଇଛି ସେ ଅଳସ ଭଙ୍ଗୀରେ ।

ଶୋଇ ନାହିଁ ବହୁତ ଦିନରୁ
ନିଦ ସବୁ ଜମା ଅଛି
ତା ଆଖିରେ ସୂକ୍ଷ୍ମ ତନ୍ତୁ
ଭଳି
ପାଖରେ ପଡ଼ି ରହେ
ଭଙ୍ଗା ଅଣ୍ଡା, ଅଣ୍ଡାର ଖୋଳପା,
ଶୋଇଛି ନିସ୍ପନ୍ଦ ହୋଇ
ଜାକିଜୁକି, ଭୟର କୁଣ୍ଡଳୀ ।

ସାପ କେବେ କ୍ଷତି କରେ
ନାହିଁ,
କାହାରିକୁ ଦଂଶେ ନାହିଁ
ଅକାରଣେ,
ହେମନ୍ତ ରଙ୍ଗର ସାପ
ଶୋଇଛି ପ୍ରଦୋଷ ବେଳାରେ,
ଶୋଇ ଥାଉ, ତାକୁ ଡାକ ନାହିଁ ।



# ଦଙ୍ଗା

ପବନରେ ବାରୁଦର ଗନ୍ଧ
ସନ୍ଧ୍ୟା ପଡ଼ି ରହେ
ଦିଗନ୍ତରେ,
କଟା ଲାଶ ପରି ।
ରକ୍ତ ଲାଗିଛି ଗୋଧୂଳି
ଦେହରେ ।
କୋଳାହଳ ଶୁଭେ ଚାରିଆଡ଼େ ।

ଗନ୍ଧକର ଗନ୍ଧ ପବନରେ
ଏକ ଗଭୀର ଖାତ ମୁହଁରେ
ହାମୁଡ଼ି ହୋଇ ଅନ୍ଧାର
ମୋତେ ଅପେକ୍ଷା କରୁଛି ।

ରାତି ହେଲେ କ୍ରମଶଃ ଘୋଟି
ଆସେ ଲୋମଶ ଅନ୍ଧାର,
ଦୂରରେ ନିଆଁର ହୁଳା,
ଲେଲିହାନ ଶିଖା ଦେଖାଯାଏ,
ଠଣ-ଠଣ ଶବ୍ଦ କରି
ଛୁଟି ଯାଏ ଦମକଳ
ଆଗ୍ନେୟ କୋଣରୁ ।

ଚାରିଆଡ଼େ ଘୋର ବିଭୀଷିକା,
କେତେ ଘର ପୋଡ଼ିଗଲା,
କେତେ ସ୍ତ୍ରୀ, ସ୍ୱାମୀ-ହରା ହେଲେ,
ଭଙ୍ଗା ଜାନୁ, କଟା ସ୍ତନ,
ଉନ୍ମୂଳିତ ନାଭି,
ଟେବୁଲ-ଚୌକି ସବୁ
ଭାଙ୍ଗି ଚୂର୍‌ମାର,
କେତେ ସ୍ୱପ୍ନ ହଜିଗଲା
ନିମେଷ ମଧ୍ୟରେ ।

ମ୍ଳା ମା'ର ସ୍ତନରେ
ମୁହଁ ମାଡ଼ି ଶୋଇ ରହେ
ଉଦାସୀନ ଶିଶୁ,
ପବନରେ ଉଡୁଥାଏ ଛିଣ୍ଡା
କ୍ୟାଲେଣ୍ଡର,
ମାଛି ଆସି ବସି ଅଛି
ଛବିର ଯୁବତୀ ଗାଲରେ ।



# ଜେମା ଦେଈ

ଗେଣ୍ଡାଳିଆ ଉଡ଼େ ସବୁଦିନ,
ଉଡୁଉଡୁ ଝାଡ଼ି ଦିଏ ପର,
କାନ୍ଦନ୍ତି ଜେମା ଦେଈମାନେ
ଆଖି ତାଙ୍କ ଲୁହ ଜର ଜର ।

ସୁଗନ୍ଧୀ ରଙ୍ଗୀନ ଚିଠି
ଛାତିରେ ଲୁଚାଇ,
ମୁହୁର୍ମୁହୁ ଛାଡ଼ି ଦୀର୍ଘଶ୍ୱାସ,
ସେ ଚିଠି ପଢ଼ିବାକୁ ବେଳ
ମିଳେ ନାହିଁ,
ଗାଧୁଆ ଘରର ସିକ୍ତ
ଅନ୍ଧାର ଭିତରେ
ତାକୁ ପଢ଼ି ହୁଏ ଖାଲି
ଥରିଲା ହାତରେ ବାରମ୍ବାର ।
ଜେମା ଦେଈ ଠିଆ ହୁଏ
ଝର୍କାରେ ଆସି
ମୁଁ ଡରେ ଅନାଇଁବାକୁ
ତା ଆଖିକୁ,
ଆଖି ତାର ବଡ଼ ନିରିମାଖି ।

କଣ ଖୋଜୁଛି କେମା ଆଜି
ନିଷ୍ଫଳକ ଅନାଇ ଅନାଇ
ଆକାଶରେ ଜହ୍ନ ଆସି ନାହିଁ,
ସେ ନେଇଛି ଛୁଟି ପୁଣି
କିଛିଦିନ ପାଇଁ ।
ଛିନ୍ନଭିନ୍ନ ସ୍ୱପ୍ନମାନେ
ଝୁଲୁଛନ୍ତି ବିଜୁଳି ଖୁଣ୍ଟରେ ।

ପ୍ରେମ ପାଇଁ କେମା ଆଜି
ମାତ୍ରାଧିକ ଅଝଟ କରୁଛି,
ସେ ଚାହେ ପ୍ରେମ ଟିକେ,
ପ୍ରୟୋଜନ ନାହିଁ ଲିପଷ୍ଟିକ୍,
ବିଉଟିପାର୍ଲର ଗଲେ
କଣ ହେବ ?
ଉତୁଙ୍ଗ କଳା-ବ୍ରା, ଓପଡ଼ା ଭୂଲତା,
କିମ୍ବା ଫେସିଅଲ୍,
ସେ ସବୁକୁ ଦୂରରେ ପକାଇ
ସେ ଚାହେ କେବଳ ଏକ
ଉଷ୍ମ ଆଲିଙ୍ଗନ,
ଯାହା ଥରିଲା ଦେହକୁ ତାର
ଆଶ୍ଳେଷରେ ଭିଡ଼ି ନେବ
କିଛି ବେଳ ପାଇଁ,
ଆଉ କିଛି ଜମା ଲୋଡ଼ାନାହିଁ ।

ବାପା କିଛି ଅଭାବ ରଖିବେନି,
ରଙ୍ଗିନ୍ ଟି.ଭି., ଅଥବା ମାରୁତି,
ଗହଣାରେ ଭରି ଦେବେ
ହାତ, ବେକ, ଛାତି ।
ଦେହଲତା ବେଢ଼ିବ ମୁଗ୍ଧ
ବେନାରସୀ,
ପ୍ରତି ଘରେ ବିଛାଇବେ କାଶ୍ମିରୀ
କାର୍ପେଟ୍ କାନ୍ଥରେ ଆରଶୀ ।
ସ୍ନିଗ୍ଧ କଳା ପାଣି ଅଛି
ପାତାଳ କୂଅରେ
ଫ୍ୟାନ୍‌ରେ ଝୁଲିବା ପାଇଁ ଶାଢୀ,
ବୋତଲରେ ଅଛି କିଛି
ସଫା କିରୋସିନି.
କାନ୍ଦ ନାହିଁ ଜେମା ଦେଈ.
ଆଉ କାନ୍ଦ ନାହିଁ ।



# ସ୍ୱଭାବ-ସୁନ୍ଦରୀ

ତୁମେ ଘରକୁ ପଶିଲେ
ଇନ୍ଦ୍ରଧନୁ ଫୁଟେ ଚାରିଆଡ଼େ,
ପ୍ରଜାପତିମାନେ ଧାଁଆନ୍ତି
ଘର ମୁହାଁ,
ଅଜଣା ଫୁଲର ମହକରେ
ଭରିଯାଏ କୋଠରୀ ।

ତୁମ ଦେହରୁ ବାହାରେ
ରଜନୀଗନ୍ଧାର ବାସ୍ନା,
ଓଠରୁ ଝରିପଡ଼େ ମହୁ
ପଦ୍ମ ଫୁଲର ।
ତୁମ କଟାକ୍ଷ ବିଦ୍ଧ କରେ
ହୃଦୟ ।

ତୁମ ପାଇଁ ଲୋଡ଼ା ନାହିଁ
ସୁନାର ଗହଣା,
ନମ୍ରତାହିଁ ତୁମର ଶ୍ରେଷ୍ଠ
ଆଭରଣ,

ତୁମର ଫୁଙ୍ଗୁଳା ଛାତିରେ
ବର୍ତ୍ତୁଳ ଯୁଗଳ ସ୍ତନ,
ମଝିରେ ଲାଲି ଜାଇ,
ଯାହା ବିରଳ ନକ୍ଷତ୍ର
ଭଳି ଜଳୁଛି ।
ତୁମର ଦୁଇ ଜାନୁରେ
ସ୍ଥିର-ବିଜୁଳୀ ଚିତ୍ରିତ,
ଆଉ ଜାନୁ-ସନ୍ଧି ଗୋଧୂଳି
ପରି ମ୍ଳାନ ।

ସ୍ତନକୁ ବାନ୍ଧିବା ଲାଗି
ବ୍ରାର ଦରକାର ନାହିଁ
ତୁମର
ଭ୍ରୂ ଆଙ୍କିବା ଲାଗି ପେନ୍ସିଲ୍ ଅନାବଶ୍ୟକ ।
ଆଖିର ପଲ୍ଲବ ଯଥେଷ୍ଟ ଦୀର୍ଘ ତୁମର,
ଲାଲି ଲିପଷ୍ଟିକ୍ ଫୋପାଡ଼ି ଦିଅ ଦୂରକୁ,
ତୁମ ଓଠ ସୁନ୍ଦର ଏବଂ ଯଥେଷ୍ଟ ରକ୍ତିମ ।
ମୁହଁର ଲାବଣ୍ୟ କୃତ୍ରିମ
ପାଉଡରରେ ଧୂସର କର ନାହିଁ ମୋଟେ ।
'ବିଉଟି-ପାର୍ଲର'ର ରାସ୍ତା ଆପାତତଃ
ସମ୍ପୂର୍ଣ୍ଣ ଭୁଲିଯାଅ ।



# ଫୁଲ

ଏ ଫୁଲ ଫୁଟେ ନର୍କରେ,
ଉଜୁଡ଼ା ବସନ୍ତରେ କୋଇଲୀର
ଶେଷ ଡାକ ଶୁଣି
ଏ ଫୁଲ ପାଖୁଡ଼ା ମେଲାଏ ।
ଆଖିର ଲୁହରେ ଖାଲି
ଏ ଫୁଲ ଉଧାଏ,
ଏ ଫୁଲ ମଉଳେ ନାହିଁ
ଦୁଃଖର ଝାଞ୍ଜିରେ ।

ଯେଉଁମାନେ ଅନ୍ଧାରରେ ବସନ୍ତି
ଆସି ନଈପଠା ପାଖେ
ଯେଉଁମାନେ ପ୍ରେତ ପରି
କଟାନ୍ତି ସାରାରାତି
ଦୀର୍ଘ ଉଜାଗରେ ।
ଯେଉଁମାନେ ଜାଣିଛନ୍ତି
ରାତିର ସୀମାରେ
ସହସା ଉଇଁବ ଆସି
ବିରଳ ବିସ୍ମୟ ଭଳି
ଜହ୍ନର ପରାତ,
ଯେଉଁମାନେ ବସନ୍ତି ଅନ୍ତରଙ୍ଗ
ହୋଇ ପାଖାପାଖି
ପରସ୍ପର ଛନ୍ଦାଛନ୍ଦି ହାତ ।

ଏହି ସବୁ ଆଶ୍ଚର୍ଯ୍ୟ କୁହୁକ
ପାଇଁ ଜୀବନକୁ
ଭୁଲି ଯିବା ଭଲ ।
ଜୀବନର ଶେଷ ଘ୍ରାଣ
ଶେଷ ଆହ୍ୱାନ
ଶୁଣିବା ଆଗରୁ
ପୃଥିବୀରୁ ଚାଲିଯିବା ଭଲ ।

ପାତାଳର ନିର୍ଜନରେ ଫୁଟେ
ଏହି ଫୁଲ,
ପେଚାର ସଞ୍ଚାରିତ ଡେଣାରେ ଡେଣାରେ
ଉଡ଼ିଯାଏ ସମସ୍ତ ଅନ୍ଧାର ।
ଜୋଛନାରେ ଅବଗାହି
ନଈ ଚାଲେ ଭେଟିବାକୁ
କରୁଣ ସେ ଦ୍ୱୀପ ଆଡ଼େ
ପହଁରି ପହଁରି,
ଧାନ କେଣ୍ଡା ଉଠୁଛି ଶିହରି,
ପୃଥିବୀର ସବୁ ରୂପ
ସବୁ ଅସ୍ଥିରତା
ଆଜି ସରିଯାଉ,
ଝରିଯାଉ ପବିତ୍ରତା ସବୁ ।

ପୃଥିବୀକୁ ଭଲ କରି ବୁଝିବା
ଆଗରୁ, ଆମେ ସବୁ

ନର୍କକୁ ଯିବା,
ଫୁଲ ତ ଫୁଟୁଛି ସେଠି
ମେଲୁଛି ପାଖୁଡ଼ା,
ପେଚାର ଡେଣାର ବାସ୍ନା
ତା ଦେହରେ ଲାଖି
ରହିଅଛି,
ପାଉ ନାହିଁ କଣ
ସେହି ତୀକ୍ଷ୍ଣ ଅପରୂପ ଘ୍ରାଣ ?
କାଉ ଏକ ଉଡ଼ିଗଲା
ଡାକି ଡାକି ମ୍ଳାନ ଜ୍ୟୋସ୍ନାରେ,
ମୃତ୍ୟୁ ଆସୁଛି ଧୀରେ
ଶୁଭୁଛି ତା ପଦଧ୍ୱନି
ଘାସରେ ଘାସରେ,
ସେ ଆମକୁ ନେଇଯିବ
ଦେଖିବାକୁ ଏ ବିଚିତ୍ର ଫୁଲ,
ଶୀଘ୍ର ଆସ, ଧର ମୋର ହାତ,
ଯିବା ସାଙ୍ଗ ହୋଇ ।



# ଅବୀର

ଉଜୁଡ଼ି ଯାଇଛି ସବୁ ସ୍ମୃତି
ନିଷ୍ଠୁର ଝଡ଼ରେ,
ଏଠି ସେଠି ପଡ଼ି ରହେ
ଚିହ୍ନା ମୁହଁ ସବୁ
ଝରା ପତ୍ର ପରି ।
ସବୁ ଚେର ଯାଇଛି
ହୁଗୁଳି ଜୀବନ ମାଟିରୁ,
କଚାଡ଼ି ପଡ଼ିବ ମହୀରୁହ
ମୁହଁ ମାଡ଼ି ଅନ୍ଧାର ଦେହରେ ।
ହଜାରେ ପାଦ ଚିହ୍ନ ନଈବାଲି
ରଖିଅଛି ଧରି,
ଛାତିରେ ତା' ନିବିଡ଼ ଭାବରେ ।
ପବନ ଉଡ଼ାଇ ନେବ ଚିହ୍ନ ସବୁ
ବାଲିକୁ କରି ସମତଳ,
ଚିହ୍ନ ସବୁ ହଜି ଯିବେ
ଆଉ କିଛି ବାରି ହେବନାହିଁ ।

ରଙ୍ଗ ନିଅ ଫୁଲ ପାଖୁଡ଼ାରୁ
ଆକାଶରୁ ନିଅ ରଙ୍ଗ,
ଭୁଲ୍ ନାହିଁ ସମୁଦ୍ରର ସୁତୀବ୍ର
ନୀଳ ଜଳ ରାଶି, କିନ୍ତୁ
ସବୁଠୁଁ ସୁନ୍ଦର ରଙ୍ଗ
ହୃଦୟରେ ଅଛି ।

ଚିରସ୍ଥାୟୀ ସେହି ରଙ୍ଗ
ହୃଦୟରେ ଆଙ୍କି ଲାଗିଗଲେ
ଆଉ ଛାଡ଼େ ନାହିଁ
ଯେତେ ଧୋଇଲେ ବି
ସେ ରଙ୍ଗ ମଉଳେନି ତିଳେ
ହୃଦୟକୁ ରଙ୍ଗାଇବ ହୃଦୟ-ରଙ୍ଗରେ,
ମନରେ ଛାଟି ଦିଅ ମନର ଫଗୁକୁ ।

ହଜାର ହଜାର ବର୍ଷ
ମୁଁ ଚାଲିଛି ପୃଥିବୀ ମାଟିରେ
ମୁଁ ଦେଖିଛି ଭଙ୍ଗା ପିରାମିଡ଼୍,
ମୁଁ କରିଛି ପ୍ରଦକ୍ଷିଣ ସୁମେରୁ-କୁମେରୁ,
ମହେଞ୍ଜୋଦାରୋର ସ୍ୱପ୍ନ
ଆଖି ପଲ୍ଲବରେ ଆଜିବି
ଲାଖି ରହିଅଛି ।
ମୁଁ ଶୁଣିଛି ନଈର କାକଳୀ,
ଅରଣ୍ୟରେ ପଲ୍ଲବର
ସାବଲୀଳ ଭାଷ୍ୟ,
ମୁଁ ଦେଖିଛି ପାହାଡ଼ରେ
କିଭଳି ହଠାତ୍ ଉଇଁ ଆସେ ଜହ୍ନ,
ସାନ ପିଲା ପରି
ଧୀରେ ଧୀରେ ଗୁରୁଣ୍ଡି ଗୁରୁଣ୍ଡି ।

ଫଗୁଣରେ ନିଆଁ ଲାଗେ
ଗଛରେ ଗଛରେ,
ଲାଲି ଫୁଲ ନିଆଁ ପରି

ଜ୍ୱଳେ ଜଙ୍ଗଲରେ ।
କେହି ଜଣେ ମୋ ପଛରେ
ସବୁ ବେଳେ ଚାଲେ
ମୁଁ ରହିଲେ ସେ ବି ଥମିଯାଏ,
ମୁଁ କିନ୍ତୁ ତାର ଛାଇ
କେଭେ ଦେଖି ନାହିଁ
ମୁଁ ଥକିଲେ ସେ କାହିଁକି
ବସି ପଡ଼େ ରାସ୍ତା କଡ଼
ବର ଗଛ ତଳେ ?
ଆଜି ସୁଦ୍ଧା ବୁଝିପାରି ନାହିଁ
ଏ ସବୁ କଥାର ମାନେ
କାହିଁକି, କଣ ପାଇଁ
ଅବିରତ ଗୋଡ଼ାଏ ସେ
ମୋ ପଛେ ପଛେ ?

ସେଦିନ ହଠାତ୍ ତ୍ରସ୍ତ ଏକ ବନ-ହଂସୀ
ଉଡ଼ିଗଲା ଜୋଛନାକୁ ଭେଦି,
ସୁଦୂର କୁହୁଡ଼ି ଆଡ଼କୁ ।
ମୁଁ ପାଲଟିଲି ସ୍ଥାଣୁ
ଏକ ପାଳଭୂତ ପରି,
ଅକସ୍ମାତ୍ ପଛକୁ ଚାହିଁଲି
ସେ ଲୋକଟା ମୋ
ଆଡ଼କୁ ଆସୁଛି ଆଗେଇ
ହାତରେ ତା ମୁଠାଏ ଅବୀର
ହୃଦୟରେ ବୋଳି ଦେବା ପାଇଁ ।



# ଇଚ୍ଛା

ମୋର ସମସ୍ତ ଇଚ୍ଛା
ତୁମକୁହିଁ କେନ୍ଦ୍ର କରି,
ସେମାନଙ୍କ ନାଚ-କୁଦ
ତୁମକୁ ବେଷ୍ଟନ କରି ଘଟେ ।
ସେ ସବୁ ଇଚ୍ଛା ସାନ, ବଡ଼,
ଅଥବା ମଝିଲା, ତୁମ ହାତ
ଧରି ତୁମ ସଙ୍ଗେ
ଖେଳିବାକୁ ଚାହାନ୍ତି ।
ସେମାନେ ଅଝଟ କରନ୍ତି
ତୁମ ସାଥିରେ, ଅଳି ପୂରଣ
ନ ହେଲେ ଅସ୍ତବ୍ୟସ୍ତ କରି
ପକାନ୍ତି ତୁମକୁ ।

କୌଣସି ଇଚ୍ଛା ହୁଏତ କୁରୁ ସଭାରେ
ଦ୍ରୌପଦୀ ପରି ତୁମକୁ ବିବସ୍ତ୍ର
କରିବାକୁ ଚାହାନ୍ତି, ପୁଣି
ଅନ୍ୟ ଇଚ୍ଛା ତୁମକୁ କୃଷ୍ଣଙ୍କ
ଭଳି ପୋତି ପକାନ୍ତି
ଶାଢ଼ୀରେ ଶାଢ଼ୀରେ ।
ଏ ସବୁ ଇଚ୍ଛାଙ୍କର କୌଣସି
ହାତ-ଗୋଡ଼ ନାହିଁ, ଇଚ୍ଛା
କେବଳ ମାତ୍ର ଇଚ୍ଛା ପରି ।

ସେମାନେ ତୁମ ସଙ୍ଗେ
ହସି-ଖେଳି, ସର୍କସର ଜୋକର
ପରି ମାଙ୍କଡ଼ଚିତ୍ ମାରି
ତୁମ ସହିତ ବେଳ କାଟନ୍ତି ।
ତୁମ ହାତ ଧରି ଗୋଲ ହୋଇ ବୁଲି ବୁଲି
ଚକା ଚକା ଭଉଁରି ଖେଳିବାକୁ
ତାଙ୍କର ଆଗ୍ରହ ପ୍ରବଳ ।
ଆଉ ତୁମକୁ ସଜାଇବାକୁ
ଚାହାନ୍ତି କେତେକ
ଫୁଲର ଗହଣାରେ ।
ବେଳେ ବେଳେ ଇଚ୍ଛାମାନେ
ତୁମକୁ କନ୍ଦାନ୍ତି,
ତୁମେ ଫୁଲି ଫୁଲି କାନ୍ଦୁଥାଅ
କଇଁ କଇଁ ହୋଇ,
ତୁମ ଲୁଗାପଟା ବିସ୍ରସ୍ତ,
କେଶରାଶି ଲୋଟୁଥାଏ ଭୂଇଁରେ ।

ପୁଣି କେତେକ ଇଚ୍ଛା
ତୁମକୁ ହସାନ୍ତି କୁତ୍ କୁତ୍ ଦେଇ,
ତୁମେ ହସି ହସି ବେଦମ ହେଲେ ବି
ତ୍ରାହି ନାହିଁ ସେମାନଙ୍କ କବଳରୁ ।
ଇଚ୍ଛା ମାନେ ବେଳେ ବେଳେ
ତୁମକୁ ଦେଖନ୍ତି ଲୁଚି ଲୁଚି
ତୁମେ କଣ କରୁଛ ବା ନ କରୁଛ
ସେମାନେ ତନଖି କରନ୍ତି ଟିକିନିଖି ।

ଇଚ୍ଛାଙ୍କର ବାଡ଼-ବତା ନାହିଁ ।
ସେମାନେ ଥରେ ଥରେ ତୁମ
କୋଳରେ ଚଢ଼ି ଛାତିରେ ମୁହଁ
ଲୁଚାନ୍ତି ଶିଶୁଙ୍କ ପରି
ସ୍ତନ୍ୟପାନର ଦାଗ ଓଠରେ
ଲାଗି ରହିଥାଏ ।
ଆଉ କେତେକ ଲଗାମ-ହୀନ ଇଚ୍ଛା
ଲାଉ ହୋଇ ଝୁଲିବାକୁ ଚେଷ୍ଟା
କରନ୍ତି ପିଠିରେ ।

ମୁଁ କହୁଛି, ତୁମେ କାହିଁକି
ଏ ସବୁ ଇଚ୍ଛା ମାନଙ୍କୁ
ସର୍କସର ସିଂହ-ଖେଳାଳି ପରି
ଚାବୁକ ମାରି ଶାସନ କରୁ ନାହିଁ ?



# ହେମନ୍ତର ଝଡ଼

ରାତି ଆଉ ବେଶି ନାହିଁ,
ସରି ସରି ଆସେ ବିଭାବରୀ,
ଉଡ଼ିଗଲେ ଯେ-ଯା ଘର
ପେଚା ଓ ବାଦୁଡ଼ି,
ଅନ୍ଧାରକୁ ଚିରି ଦେଇ
ଫାଳ ଫାଳ କରି
ଧୀରେ ଧୀରେ ଆସିଲା
ପ୍ରଭାତ,
ଦୂରରେ ଡାକୁଛି ଡାହୁକ
ତୁହାଇ ତୁହାଇ,
ଆକାଶରେ ଚଢ଼େଇଙ୍କ
ହେଲା ଆତଯାତ ।

ସୁନେଲୀ ଡେଣାର ଚିଲ
ଚକ୍ରାକାରେ ଗୋଲ ହୋଇ
ଘୁରି ଘୁରି ବୁଲେ
ସେ ଖୋଜୁଛି ତାର ସାଥୀ
ଯାହାକୁ ସେ ପାଏ ନାହିଁ
ଯେତେ ବି ଖୋଜିଲେ ।
କୁଆଡ଼େ ତା ସାଥୀ
ଗଲା ଉଡ଼ି ?

ଜହ୍ନ ଗଲା ବୁଡ଼ି
ଚାରିଆଡ଼େ ନିବିଡ଼ କୁହୁଡ଼ି ।

ହେମନ୍ତ ଝଡ଼ରେ ମୋର
ଭାଙ୍ଗିଗଲା ଘର,
ଧାନକ୍ଷେତ ପାଖେ ଆସି
ଠିଆ ହୁଏ ଜହ୍ନ,
ଜୀବନର ସାୟାହ୍ନରେ
ସେ ଆଜି ଦେଖୁଛି ମୋତେ
ପାଖକୁ ଘୁଞ୍ଚି ଘୁଞ୍ଚି ଆସି ।
ସେ ଜାଣିଛି ସବୁ କଥା
କେମିତି ମୋ ଘର ଗଲା ଭାଙ୍ଗି,
କେମିତି ଉଡ଼ାଇ ନେଲା
ଝରିଥିବା ସମସ୍ତ ବଉଳ,
ଝଡ଼ ଆସି ନିମେଷ ମାତ୍ରକେ ।

ଅନ୍ଧାରରେ ନଈ ପାଖେ ଆସେ
ଗୀତ ଶୁଣିବାକୁ,
ସବୁ କିଛି ଭୁଲିଯାଇ
ମୁଁ କେବଳ ସେଠି ବସି ରହେ ।
ଶୁଣୁଛି ତାହାର ସେହି
କୁଳୁ କୁଳୁ ସ୍ୱର,
ସେ ଗାଉଛି ସେହି ଗୀତ ।
ଭେଟିବାକୁ ଯାଉଛି ସେ

ନିଜର ଦୟିତ,
ଗାଉଥାଏ ଫେରି ଫେରି
ନଈ କ୍ରମାଗତ,
ଗୋଟିଏ କଥାକୁ ।

ମୋ ହାତ ଧରି ଟାଣେ
ଜହ୍ନ ପରି କିଏ ଏକ ନାରୀ
ନୀରବରେ ଠିଆ ହୁଏ
ନଈପଠା ପାଖେ,
ତା ଦେହରୁ ଝରୁଅଛି
ଅପାର୍ଥିବ ବିଭା,
ସମସ୍ତ ପ୍ରତିଭା ଦେଇ
ସେ ମୋତେ ଆକର୍ଷଣ କରେ,
କାହିଁକି ବା କଣ ତାର
ପ୍ରତ୍ୟାଶା ଅଛି ?

ହେମନ୍ତ ଝଡ଼ରେ ଯଦି
ଘର ଭାଙ୍ଗି ଯାଏ,
ପୁଣି ଘର ବାନ୍ଧି ହେବ
ଦ୍ୱିଧା ନାହିଁ କିଛି,
ପକ୍ଷୀଙ୍କ କାକଳୀ ଶୁଭେ
ବରଗଛ ଡାଳେ,
ଲାଲି ବର ଫଳ କିଛି
ତଳେ ପଡ଼ିଅଛି ।

ହଜିଛି ଅନେକ କିଛି
ଝଡ଼ ଆସି ଚାଲିଯିବା ପରେ
ଛିଣ୍ଡାଳ ଅନ୍ଧାର ତାର
ପ୍ରଲୋଭନ ନେଇ ଆସିବନି
ଫେରି ଆଉ ଥରେ,
ଯାଉ ସେ ଅନ୍ଧାର ଯାଉ
ଅପସରି ଦୂରେ ।

ଜହ୍ନ ପରି ରମଣୀ ସେ
କଥା କହେ ମୋ ସାଥୀରେ
ମୋ ଆଡ଼କୁ ଅନାଇଁ ଅନାଇଁ
ନୀରବ ଆଖିରେ ।
ତା ଦେହରୁ ଝରିପଡ଼େ
ବିଭା ଏକ ଅମଳିନ
ଉଜ୍ଜ୍ୱଳ ରଙ୍ଗର,
ଗର୍ଭିଣୀ ଧାନକ୍ଷେତ ହିଡ଼ ବାଟେ
ଆମେ ଦୁହେଁ ଚାଲି ଚାଲି ଯିବା,
ପାଚିଲା ଧାନର ଘ୍ରାଣ ନେଇ ନେଇ
ନୂତନ ଦିଗନ୍ତ ଦେଖିବା ।
ନିଶ୍ଚିନ୍ତରେ ଶୋଇଅଛି ସ୍ୱର୍ଣ୍ଣାଭ
ଗୋଧି ଏକ ଖରା ପୋହିଁବାକୁ
ଦେଖ ଦେଖ ଈଷତ୍ ଦୂରରେ ।



# ହୃଦୟ ଜାଣିଛି

ଜୀବନରେ ଅନେକ ଝଡ଼
ମୁଁ ଜାଣିନି, ହୃଦୟ ଜାଣିଛି
ଧରୁ ଧରୁ ହାତର ପାପୁଲି
ସ୍ୱେଦରେ ସିକ୍ତ ହୁଏ, ପାପୁଲି ଥରିଛି,
ଲୁହରେ ଭରିଅଛି ଆଖି,
ସ୍ମୃତି ସବୁ ଝାପ୍‌ସା ହୁଏ,
ମୁଁ କାନ୍ଦିନି, ହୃଦୟ କାନ୍ଦିଛି ।
ପଢ଼ି ପାରେ ସବୁ ଭାଷା
ହୃଦୟ କେବଳ,
କଣ କହେ ଆଖିପତା,
ସରୁ ସରୁ ହାତର ଅଙ୍ଗୁଳି,
ଅଥବା ଭ୍ରୂଲତା ?
କଣ କହେ ଓଠର ପାଖୁଡ଼ା
ଶିହରି ଶିହରି, ଥିରି ଥିରି କରି,
ହୃଦୟ ବିଦାରି,
ମୁଁ ବୁଝି ପାରିନି କିଛି,
ହୃଦୟ ବୁଝିଛି ।

ଆକାଶରେ ବିଶାଳ ସ୍ତବ୍ଧତା,
ଶବ୍ଦହୀନ, ବର୍ଣ୍ଣହୀନ,
ଶୂନ୍ୟତାକୁ ମାପି ହୁଏ ନାହିଁ ।

ନିଷ୍ପତ୍ର, ଦଗ୍ଧ ବନସ୍ପତି,
ସେ କାହିଁକି ଠିଆ ରହେ
ଗୋଟିଏ ଗୋଡ଼ରେ ?
କାହିଁକି ନିଷ୍ପତ୍ର ଆଜି
ପତ୍ର ସବୁ କାହିଁକି ବା
ଝଡ଼ି-ପଡ଼ି, ଉଡ଼ି-ଆଡ଼ି ଗଲା
କେଉଁଆଡ଼େ, କେଉଁ ଦିଗନ୍ତରେ
କହ କହ କେଉଁ ନିଦାଘରେ ?
ଫେରିଗଲା କାହିଁକି କୋଇଲୀ
ବ୍ୟର୍ଥ ବସନ୍ତରେ ?
ଏ ସବୁ ପ୍ରଶ୍ନର ମାନେ
ମୁଁ ଜାଣିନି, ହୃଦୟ ଜାଣିଛି ।
ମୁଁ ତ ସେହି ବିଦ୍ଧ ତରୁ,
ଡାଳ ଟେକି ଆକାଶକୁ
ରହିଛି ଅନାଁଇ ।

ହୃଦୟ ଖେଳିଛି ହୋଲି
ରକ୍ତରେ ଭରି ପିଚିକାରୀ,
ଏ ରଙ୍ଗ ମଉଳେ ନାହିଁ,
ଧୋଇଲେ ବି ପଡ଼େ ନାହିଁ ଫିକା,
ଏ ରଙ୍ଗ ଦିନାନ୍ତର,
ଏ ରଙ୍ଗ ଗୋଧୂଳିରେ ଅଛି,
ଏ ରଙ୍ଗ ସବୁଠୁଁ ଦାମିକା ।

ହୃଦୟ ଆଣିଛି ଯାକୁ
ଦିଗନ୍ତରୁ ଚୋରି-ଚାରି କରି,
ହୃଦୟ ଖେଳିଛି ହୋଲି
ହୃଦୟ ସାଥିରେ,
ହୃଦୟକୁ ଥାପି ହୃଦୟରେ ।

ହୃଦୟ ଚିହ୍ନିଛି ସବୁ ନକ୍ଷତ୍ରଙ୍କୁ
ଜାଣିଛି ଆକାଶରେ ଜହ୍ନର
ନିୟମିତ ଗତି,
ସେ ମୋର ହାତ ଧରି
ନେଇଗଲା ନଈ ପଠା ପାଖେ,
ଦେଖାଇଲା ପୃଥିବୀର ସର୍ବଶ୍ରେଷ୍ଠ
ମୋହମୟ ଜହ୍ନ,
ସବୁଠାରୁ ବର୍ତ୍ତୁଳ, ସବୁଠାରୁ ବଡ଼,
ମୁଁ ଚିହ୍ନିନି, ହୃଦୟ ଚିହ୍ନିଛି,
ମୁଁ ଦେଖିନି, ହୃଦୟ ଦେଖିଛି ।



# ବିରହର ଋତୁ

ସହରକୁ ଆସିଛନ୍ତି ବେଗମ ଆଖତାର,
ପବନ ବହୁଛି ବିରହର,
ଚାରିଆଡ଼େ ଶୁଭୁଅଛି ଗଜଲର
ସ୍ୱର,
'କୋଏଲିଆ ମତ କର ପୁକାର' ।
କେହି କେହି ବିରହିଣୀ
ପାଗଳିନୀ ଆଜି ।

ମଞ୍ଚରେ ବସିଛନ୍ତି ବେଗମ ଆଖତାର,
ରହି ରହି ଝଲସୁଛି
ତାଙ୍କ ନାକ ଗୁଣା,
ମାଗୁଛନ୍ତି ଖୋଦାଙ୍କ କରୁଣା,
କୋଇଲୀକୁ ରାବିବାକୁ କରୁଛନ୍ତି ମନା,
ଛାତି ଯାଉଛି ଫାଟି ଏବଂ କାମନା
ନିଁଆ ଭଳି ଜଳୁଛି ଦେହରେ ।
ମେଘ ଆସୁଛି ଘୋଟି,
କଳା ମେଘ ଏବଂ ବିଜୁଳୀ ।
ମନା କର କୋଇଲିକୁ
ଗୀତ ବୋଲିବାକୁ
ଆଉ ସହି ହେଉ ନାହିଁ ଜନ୍ମା ।

ଆମେ ଦୁହେଁ ଦୀର୍ଘ ବାଟ
ଚାଲିଅଛୁ ଅନେକ ଦିନରୁ,
ମୋ କାନ୍ଧ ଛୁଁଇଛି ତୁମର,
କେତେ ଟିକେ ଚିହ୍ନିଅଛୁ
ଆମେ ପରସ୍ପର,
ବ୍ୟବଧାନ ବଢ଼ିଅଛି ଖାଲି
ହାତମୁଠା ଖୋଲିଯାଏ
ଅଙ୍ଗୁଳି କଥା କହେ ନାହିଁ
ପୃଥିବୀ ଖଣ୍ଡିତ ଆଜି,
ଆହତ ଆକାଶ,
ଗୋଲ-ତକିଆ ପରି
ନିଷ୍ପ୍ରାଣ ତୁମ ଦେହ
ବିଛଣାରେ କେବଳ ଗଡୁଛି ।

ଆସିଛନ୍ତି ବେଗମ ଆଖତାର ସହରକୁ,
କଟୁ ନାହିଁ ବିରହର ବେଳ,
ବିଶ୍ୱାସର ସବୁ ଚେର ଯାଇଛି ହୁଗୁଳି,
ବିଧ୍ୱସ୍ତ ସବୁ ବନସ୍ପତି ।
ଆମେ ଦୁହେଁ ଚୁପ୍ ଚାପ୍
କଫି କପ୍ ସାମ୍ନାରେ ରଖି,
ରହିଅଛୁ ଅନାଇ କାଛକୁ,
ବିଭକ୍ତ ଟେବୁଲରେ ଏକାନ୍ତ ଏକାକୀ ।



# ଯେଉଁ ଦିନ

ଯେଉଁଦିନ ମୁଁ ଆଉ
ଫେରିବିନି ପୃଥିବୀକୁ
ଯେଉଁଦିନ ଗୋଧୂଳି ଆଉ ଟିକେ
ଦୀର୍ଘତର ହେବ,
ଯେଉଁଦିନ ନଈପଠା,
କାଶତଣ୍ଡୀ ଫୁଲ, ଆବେଗରେ
ଫୁଲି ଫୁଲି ମଥା
ପିଟୁଥିବେ ।
ଯେଉଁଦିନ ଜହ୍ନ ଆସି ଫେରିଯିବ
ମୋତେ ଖୋଜି ଖୋଜି,
ଯେଉଁଦିନ ମେଘମାନେ
ଆକାଶରେ କେବଳ ପ୍ରହରୀ
ପରି ଚୁପ୍ ଚାପ୍ ଠିଆ ହୋଇଥିବେ,
ଅବାଧ ସଞ୍ଚରଣ କଥା
ବେବାକ ଭୁଲି ଯାଇଥିବେ ।
ସେହି ଦିନ ପୃଥିବୀରୁ ମୁଁ
ନେବି ବିଦାୟ ।
ମୁଁ ଶୋଇବି ବିଛଣାରେ
ସ୍ତବ୍ଧ ଏକ ଶବ ପରି,
ମୁହଁ ଢାଙ୍କି ଶୁଭ୍ର ଚଦରରେ ।
ମୁଁ ଆଉ ବୁଲିବିନି ଜହ୍ନ-ଆଲୁଅରେ,
କିମ୍ୱା, କାକରରେ ଓଦା ଘାସ
ଛୁଇଁ ଛୁଇଁ ହେମନ୍ତ ସନ୍ଧ୍ୟାରେ ।

ରକ୍ତରେ ଭରିଅଛି
ନୀଳାଭ ବିଷାଦ
ଅତୃପ୍ତ କାମନା ଯେତେ
ଖେଳନ୍ତି ରକ୍ତରେ ।
ଆଜି ବି ମୁଁ ସ୍ୱପ୍ନ ଦେଖେ
ତୁମକୁ କେବଳ,
କାହିଁକି ଆସିଲ ତୁମେ
ଏତେ ଡେରି କରି ?
ଯଦିଓ କବାଟ ମୋର
ଖୋଲା ଥିଲା ସବୁଦିନ ପରି ।
ନଗ୍ନ ଦେହେ ପିନ୍ଧିଥିଲ
କୁହୁଡ଼ିର ଶାଢ଼ୀ,
ସ୍ତନ ଚୂଡ଼ା ନିତାନ୍ତ ପ୍ରକଟ ଏବଂ
ତହିଁରେ ମୋହମୟ ତିଳ ଚିହ୍ନ
ଝଲସୁଛି ଖାଲି ।
ଅପୂର୍ବ ନିଟୋଳ ଗୋଲକ,
ବିରଳ ବର୍ତ୍ତୁଳ ଘ୍ରାଣ
ତହିଁରୁ ଝରୁଛି ।
ମୁଁ ଆଉ ସ୍ୱପ୍ନ ଦେଖିବିନି, କିମ୍ବା
ତୁମେ ଆଉ ଆସିବନି
ମୋ ସ୍ୱପ୍ନରେ ଧରା ଦେବ ବୋଲି ।

ସରିଯାଉ ରାତିର ଅଶାନ୍ତ ପ୍ରହର,
ଏ ମୋହର ଶେଷ ରାତି,

କ୍ରମଶଃ ମିଶି ଯାଉ ବିଲୁଆର ସ୍ୱର
ଘନ ଅନ୍ଧାରରେ ।
ତୁମ ପେଟ, ତୁମ ନାଭି, ଅତ୍ୟନ୍ତ ମସୃଣ
କୌଣସି ଫଟା ଦାଗ ନାହିଁ ।
ତକିଆଠୁଁ ଆହୁରି ନରମ, ଆଉ
ମୁଣ୍ଡ ରଖି ଶୋଇବାକୁ
ବହୁତ ଆରାମ ।
ଏଥର ଶୋଇବି ମୁଁ ନିଘୋଡ଼
ନିଦରେ ସବୁଦିନ ପାଇଁ ।

ଗଛର ପତ୍ର ସବୁ
ଝରିଯିବ ଦିନେ,
ଧୂସରରୁ ଆହୁରି ଧୂସର
ଜହ୍ନ ଆସି ଠିଆ ହେବ
ବିଲର ହିଡ଼ରେ,
ଗାଁଉଲୀ ଗପ ତାର ସରିଯିବ
ପାଳ-ଭୂତ ସଙ୍ଗେ,
ସେ ନେବ ବିଦାୟ,
ପୃଥିବୀରୁ ହାୟ,
ସବୁଦିନ ପାଇଁ,
ମୋ ଭଳି ମ୍ଳାନ ଜୋଛନାରେ ।



# ରଜା ଆଉ ରାଣୀ

ରଜା ଯିବେ ପାରିଧିକୁ
ରାଣୀ ଛାଡ଼ନ୍ତି ନିଃଶ୍ୱାସ,
ଫେରନ୍ତିନି ଘର ରଜା
କଟିଯାଏ ଦିନ, ବର୍ଷ, ମାସ,
ରଜା କଣ ସତେ ସତେ
ପଡ଼ିଗଲେ ଡାହାଣୀ ହାବୁଡ଼େ ?

ବୁଢ଼ୀ ଅସୁରୁଣୀ
ହାତ ଟେକି ଭାଙ୍ଗଇ
ଅଳସ,
ହାତୀ ବୁଲେ ଢାଳିବ
କଳସ,
ନୂଆ ରଜା ହେବେ ପୁଣି
ଭଲରେ ଚାଲିବ କାହାଣୀ ।
ରାଣୀଙ୍କର ସମୟ ବିତେନି,
ପାନ ଖାଇ, ମାରି ହାଇ,
ସେ ବସନ୍ତି ଶୁଆ ପାଖେ
ଶୁଣିବାକୁ ଗପ,
ପାନ ପିକ ଢୋକି ଦେଇ
ଭୂଇଁରେ ପାରି ଦେଇ ସପ,
ଗପ ଶୁଣନ୍ତି ସିଏ ଏକାଗ୍ର ମନରେ ।

କିପରି ଯୁବତୀ ନାରୀ
ସୌନ୍ଦର୍ଯ୍ୟ ଅମାପ
ମାତିଲା ଯୋଗୀ ସଙ୍ଗେ
ଜାତି, କୁଳ ଭୁଲି,
ଶୁଆ କହେ ଗପ ସବୁ
ଗୋଡ଼ରେ ଶିକୁଳି ।

ପୃଥିବୀରେ ନାହାନ୍ତି ଆଜି
ରଜା କିମ୍ବା ରାଣୀ,
ଆମରି ଭିତରେ ଚାଲେ
ଯେତେ ହଣାହଣି ।
ଆମରି ଭିତରେ, ଯୁଦ୍ଧ,
ସ୍ୱାର୍ଥ ପାଇଁ ବିସମ୍ବାଦ ଯେତେ,
ଆମରି ଉଦ୍ୟତ ହାତ
ବୋଲିଦିଏ ଅଠା
ଅପର ମୁଣ୍ଡରେ ।
ଆମରି କର୍ମ ପାଇଁ
ଯେତେ ହଟହଟା,
ଆଜି ଆଉ ରଜାରାଣୀ
ନାହାନ୍ତି କେଉଁଠି,
ସେମାନେ ଲୁଚିଛନ୍ତି
ତାସର ମୁଠାରେ ।



# ଚଢ଼େଇ-୨

ଦିନେ ଆସିଲା ସେ ତ
ଧରା ଦେବ ବୋଲି,
ଅନ୍ଧାର କାଟି କାଟି
ସାନ ଡେଣା ହଲାଇ ହଲାଇ
ଆସିଲା ଅଣ୍ଟରେ ଘେନି
ପ୍ରେମ ପରି ଅଳପ ସରାଗ,
ଯାହା ଅଲୌକିକ ଅଳଙ୍କାର ଭଳି
ଦିଶୁଥାଏ ।

ଛାତିରେ ତା ଅଙ୍କା ଥିଲା
ଅଶ୍ରୁର ଦାଗ, ବାଦାମୀ ରଙ୍ଗର, ଆଉ
କଣ୍ଠ ପାଖେ ନୀଳ ଶିରା
ଅତ୍ୟନ୍ତ ଉଜ୍ଜ୍ୱଳ ।
ବସନ୍ତର ତୃଣ ଧରି ଆସିଛି ସେ
ମୋତେ ଦେବ ବୋଲି ।
ନିହାତି ସାନ ସେ ତ,
ମୁଠାଏ ଚଢ଼େଇ, ଅତ୍ୟନ୍ତ ନରମ ।

ସେ ଆସିଛି ଅନେକ ଦୂରରୁ
ପ୍ରଚୁର ପାହାଡ଼ ଓ ବଣ ଡେଇଁ,
ପଳାଶର ସ୍ୱପ୍ନ ପରି
ଚେନାଏ ଚଢ଼େଇ
ମୋତେ ଦେବ ତା ଡେଣାର
ଉଷ୍ଣ ଆଲିଙ୍ଗନ,
ଯାହା ମୋତେ ଚୁମ୍ବନଠୁଁ
ଅଧିକ ଲାଗିବ ।
ତା ଡେଣାରେ ସମୁଦ୍ରର ବାସ୍ନା
ଲାଗିଅଛି,
ସୁଦୂର ଦାରୁଚିନି ବଣର ସ୍ୱପ୍ନ,
ସ୍ମୃତି ପରି ତା ଆଖିକୁ
କରିଛି ଉଜ୍ଜ୍ୱଳ ।
ସେ କାହିଁକି ଛାଡ଼ିଗଲା
ମୃତ ଏକ ନାବିକର ହାଡ଼,
ଟେବୁଲ ଉପରେ ମୋର ସନ୍ତର୍ପଣରେ ?



# କବିର ଜନ୍ମ

ମୁଁ କିଏ, କଣ, କାହିଁକିର
ଜବାବ ଜାଣେନା ।
ସେହିଭଳି ଜାଣେ ନାହିଁ
କାହିଁକି ମୁଁ ଏ ପୃଥିବୀକୁ
ଆସିଲି ତାର କାରଣ ।

ମୁଁ କାହିଁକି କବି ହେଲି,
କାହିଁକି ହେଲି ନାହିଁ
ଅନ୍ୟ କିଛି, ବ୍ୟାଙ୍କ ଅଫିସର,
ଅଥବା କୌଣସି କାରଖାନାରେ
ହିସାବ - ରକ୍ଷକ ?
କାହିଁକି ମୁଁ ଗଣି ଗଣି
ବିଚ୍ଛେଦର ଦିନ ଛାଡ଼େ ଦୀର୍ଘଶ୍ୱାସ
ବାରମ୍ବାର ଗଭୀର ଭାବରେ ?
କାହିଁକି ମୋ ହୃଦୟରେ
ସୁଦୂର ନକ୍ଷତ୍ର ପରି
ଜଳୁଥାଏ ପ୍ରେମ ଅବିରାମ ?
ମୁଁ କାହିଁକି ସାରାରାତି
ଉଜାଗର ରହେ ତାରା ଗଣି ଗଣି ?
ଉତ୍ତର କିଏ ଦେବ ଏ ସବୁ ପ୍ରଶ୍ନର,
କିମ୍ବା, ଛାଡ଼ି ଦେବ ସମସ୍ତ ଦାୟିତ୍ୱ
ଈଶ୍ୱରଙ୍କ ଉପରେ ଆପାତତଃ ।

ମୁଁ ଦେଇ ନାହିଁ ଦୁଧ-ଭାତ
ଗୋଳେଇ-ଗାଳେଇ କାହାରିକୁ, କିମ୍ବା
ଦିନେ ଦେବି ବୋଲି ତାର ପ୍ରତିଶ୍ରୁତି ।

ମୁଁ ପୋଡ଼ି ପୋଡ଼ି ଦଗ୍ଧ ହେଲି
କ୍ରମାଗତ କେତେକ ଶତାବ୍ଦୀ,
ତାପରେ ଦିନେ ବୈଶାଖୀ ଝଡ଼ରେ
ଅକସ୍ମାତ୍, ଇତସ୍ତତଃ ଭ୍ରାମ୍ୟମାଣ ମେଘଙ୍କ
ଗହଳିରୁ ମୁକୁଳି ଆସି
ପୃଥିବୀରେ ପହଞ୍ଚିଲି,
ସେତେବେଳେ ସରିଥାଏ ପକ୍ଷୀଙ୍କ
ମୃଦୁ ସଞ୍ଚରଣ,
ନିମଜ୍ଜିତ ଅନ୍ଧାରରେ ପାର୍ଥିବ ପାହାଡ଼
ପରି ସ୍ଥିର ଦିଶୁଥାଏ ସମସ୍ତ
ଅଟ୍ଟାଳିକା, ମନ୍ଦିର ଏବଂ ସହର ।

ଇତିହାସ ସେତେବେଳେ ଶୋଇଥାଏ
ନିଘୋଡ଼ ନିଦରେ,
ପ୍ରହରଙ୍କ ଅଷ୍ଟାବକ୍ର ସଙ୍କୁଚିତ
ଶରୀରରେ ନ୍ୟୂନତମ କମ୍ପନ ସୁଦ୍ଧା
ଦୃଶ୍ୟମାନ ହୋଇ ନାହିଁ ।
ଅବାନ୍ତର ସୂର୍ଯ୍ୟୋଦୟକୁ ଉପେକ୍ଷା
କରି ମୁଁ ଭୂମିଷ୍ଠ ହେଲି ରାତିରେ
ସେଦିନ ।
ଶୁଭ ଜନ୍ମ ଦିନରେ ମୋର କେହି ହେଲେ
ଶଙ୍ଖ ବଜାଇନି ।



# ଝଡ଼

ମୁଁ ଖୋଜୁଛି ଝଡ଼ର ଠିକଣା,
ତାହା କଣ ଲେଖା ଅଛି
ନୈରତ କୋଣରେ ?
ତାହା କଣ ଲେଖା ଅଛି
ଗାଢ଼ କଳା ମୁଗୁନି ମେଘରେ ?
ବେଳେ ବେଳେ ଦୈନନ୍ଦିନ ପବନର
ହାତ ଧରି ଯାଉ ଯାଉ
ସହସା ହଠାତ୍ ପାଇଛି ମୁଁ
ପ୍ରଗାଢ଼ ଉଷ୍ଣ ଆଲିଙ୍ଗନ, କେଉଁ
ଏକ ବାରବୁଲା ଖଣ୍ଡିଆ ଭୂତର, ତାପରେ
ଦେଖୁ ଦେଖୁ ଆସିଗଲା ଝଡ଼ ।

ଝଡ଼ ଆସି ନେଇଗଲା ପ୍ରାତ୍ୟହିକ
ଯେତେ ଅବସାଦ
ଉଡ଼ାଇ ନେଲା ନିମେଷକେ କ୍ଲୀବ
ମନର ସମସ୍ତ ବିଷାଦ ।
ଝଡ଼ କିନ୍ତୁ ପାରି ନାହିଁ
ରଜନୀ ଗନ୍ଧାର ବାସ୍ନା ପୋଛି ଦେଇ
ମନର ପର୍ଦ୍ଦାରୁ ଆଉ କିଛି
ରୋପଣ କରିବାକୁ ।

ଗୋଲାପର ଦିନଲିପି ପଢ଼ିବାକୁ
ବେଳ ପାଉ ନାହିଁ, ଝଡ଼ କଣ

ନେଇ ଯିବ ଏକାନ୍ତ ବ୍ୟକ୍ତିଗତ ନରମ ଅଙ୍ଗୁଳି
ଗୋଟି ଗୋଟି କରି । ସେ କିଭଳି ଖୋଲି ନେବ
ଜଟିଳ ଉଷ୍ଣତା ସବୁ ମୋ ହାତ ମୁଠାରୁ ?
ମୁଗ୍ଧ ହୃଦୟ ପାଖେ ଝଡ଼ର ସମସ୍ତ
ଚାତୁରୀ ବ୍ୟର୍ଥ ହୋଇଯିବ ।
ମୋ ସହିତ ସମ୍ପର୍କ ରହୁ ଓ ଗତାନୁଗତିକ
ସବୁ ଆମ୍ବ ତୋଟାକୁ ଝଡ଼ ଆସି ଲୁଣ୍ଠନ କରୁ,
ଧର୍ଷଣ କରୁ ସେମାନଙ୍କୁ ।
ଗଛ ତଳେ ପଡ଼ି ରହୁ କୁଢ଼ କୁଢ଼ ଆମ୍ବର
ଅପକ୍ୱ କିଶୋରୀ ଶରୀର । ମୋର କିଛି ଯାଏ ଆସେ ନାହିଁ
ମୁଁ କିନ୍ତୁ ବାଧା ଦେବି ଝଡ଼ ଯଦି
ଚେଷ୍ଟା କରେ ତୁମ ସ୍ମୃତି ଉଡ଼ାଇ ନେବାକୁ ।
ଅଥବା ଛିନ୍ନ ଭିନ୍ନ କରି ଦେବାକୁ
ଆମର ମିଳିତ ସ୍ୱପ୍ନ, ନିବିଡ଼ ଚୁମ୍ବନ,
ଆଉ ସାନ ସାନ ଗୋପନ ଆଶ୍ଲେଷକୁ ।

ଝଡ଼ର ଦୁନ୍ଦୁଭି ଶୁଣି
ମୁଁ ଡରିବିନି ମୋଟେ,
ଝଡ଼ର ସମବେତ ପ୍ରଚେଷ୍ଟାକୁ ମୁଁ ପ୍ରତିରୋଧ
କରିବି ଦୃଢ଼ ଭାବରେ ।
ମୁଁ ଖୋଜୁଛି ଝଡ଼ର ଠିକଣା । କାରଣ
ସେ ଆସିବା ଆଗରୁ ମୁଁ ନିଜକୁ
ସତର୍କ କରି ନେଇଥିବି ।



# ସନେଟ୍-୧

ତୁଫାନ ଆସିଛି
ଉତ୍ତାଳ ନୀଳ ବାରିଧି,
ଜୁଆରରେ ଉଠେ
ପ୍ରମତ୍ତ ଢେଉ
ଜୀବନର ସବୁ ପରିଧି
ଛୁଁଇବାକୁ ଚାହେଁ ଲହରୀ
ବାଧା ଦେବା ଲାଗି ପ୍ରହରୀ
ନାହିଁ କେଉଁଠାରେ, ପାଣିରେ
ହଜାର ଭଉଁରୀ ।

ଟଳମଳ ନାଆ
ଅତଳ ସାଗରେ କାତ,
ସରିଯିବ ସବୁ
ଜୀବନର ଆତଯାତ
ବନ୍ଦ ହୋଇଯିବ
ଯଦି ନାଆ ଯାଏ ଓଲଟି,
କାଠ ନାଆ ନୁହେଁ
ହାଲୁକା ଯେଭଳି ସୋଲଟି ।

ଜୀବନ ସାଗରେ
ଆସିବ ନିଶ୍ଚେ ଭଟ୍ଟା,
ବିପଦ ସରିବ,
ଥମି ଯିବ ଝଡ଼
ମେଘଙ୍କ ଘନ-ଘଟା
ଅପସରି ଯିବ ଦୂରକୁ
ଚିହ୍ନିବ ଅଚିହ୍ନା ସୁରକୁ
ସରିଯିବ ହଟହଟା ।

ଏହିଭଳି ଦିନେ ଆକାଶେ
ଉଇଁବ ସୂରୁଜ
ଜୀବନ କାନ୍ଥରେ
ଆଙ୍କିବ ଆଶାର ମୁରୁଜ ।



# ସନେଟ - ୨

ସାଗରରେ ଅଛି ଦ୍ୱୀପ
ଅନେକ ଅନେକ
ତୁମେ ଯାଅ ସୁଦୂର ଦ୍ୱୀପକୁ,
ଯେଉଁଠି ଫୁଲ ଫୁଟେ
ପରାଗ-ବିହୀନ ।
ଯେଉଁଠି-ବସନ୍ତ ଆସେ
ଅଜଣା ପକ୍ଷୀର ସ୍ୱରରେ ।
ଏ ବସନ୍ତ ନାମ-ଗୋତ୍ରହୀନ,
ଆସି ପୁଣି ଚାଲିଯାଏ
ନିରୁଦ୍ଦେଶ ଆଡ଼େ ।
ସେ ଜାଣିନି କୋଇଲୀର ସ୍ୱର,
କୋଇଲୀର କୁହୁତାନ
ତା କାନରେ ପ୍ରବେଶ କରିନି ।

ସାଗରର ଶେଷ ଦ୍ୱୀପ,
ପୃଥିବୀର ପ୍ରତ୍ୟନ୍ତ ସୀମାରେ,
ଯେଉଁଠି ଜୁଆର ଆସେ
ପୁଞ୍ଜି ପୁଞ୍ଜି ଢେଉଙ୍କ ଗହଣେ ।
ନକ୍ଷତ୍ରର ଛାଇ ପଡ଼େ,
ଢେଉ ସବୁ ଈଷତ୍ ଝଲସେ
ଉତ୍କଣ୍ଠା-ବିହୀନ ।

ତୁମେ କଣ ସ୍ୱପ୍ନ ଆଉ
ଦେଖିବନି ମୋତେ ?
ତୁମେ କଣ ଶୋଇଥିବ
ନିଘୋଡ଼ ନିଦରେ
ଆଜି ବି ଭୁଲି ନାହିଁ
ତୁମର ସେ ନିଦ୍ରା-ବିଳାସକୁ ?
ମୁଁ ପଚାରିନି କାହାରିକୁ
ତୁମର ଠିକଣା,
କୌଣସି ପକ୍ଷୀର ଡେଣା
ଛୁଇଁଛି କି ସେ ଦ୍ୱୀପର ସୀମା,
ଦିନେ କେଭେ ହେଲେ ?

ସହସା ଶିହରି ଉଠେ
ଦୂର ଚକ୍ରବାକ,
ଦିଶିଯାଏ ଦିଗ୍‌ଭ୍ରାନ୍ତ ଜାହାଜର
ଭଙ୍ଗା ମାସ୍ତୁଲ,
ଜାହାଜର ସବୁ ପଣ୍ୟ
ଯାଇଛି ମୂଷାଙ୍କ ପେଟରେ ।
ଜାହାଜ ଆଣିଛି
ଅକ୍ଷତ ସ୍ୱପ୍ନ କିଛି
ତୁମକୁ ହିଁ ଦେବାକୁ କେବଳ ।
ଯାହାକୁ ସର୍ବଭୁକ ମୂଷାମାନେ
ଖାଇ ପାରି ନାହାନ୍ତି ।



# ହାହାକାର

ହାହାକାର ଜୀବନରେ ଅଛି,
ସାନ, ବଡ଼, କ୍ଲାନ୍ତ, ଜୀର୍ଣ୍ଣ
ମ୍ଳାନ ହାହାକାର ।
କେହି କାହାରି ତୁଳନୀୟ ନୁହଁେ,
ସମସ୍ତେ ପୃଥକ ପୃଥକ
ଏବଂ ବିଶିଷ୍ଟ ।

ବିରହରେ ହାହାକାର ଅଛି,
ହୃଦୟକୁ ରିକ୍ତ କରି
ହାହାକାର ଉଠେ ଆପେ ଆପେ,
ମୃତ୍ୟୁ ଜାଣେ ହାହାକାରକୁ,
ସେ କିଭଳି ହୃଦୟହୀନ ଆଉ ନିଷ୍ଠୁର ।

ହାହାକାର କୁହୁଳୁଥାଏ ହୃଦୟରେ
ହୃଦୟ ଭିତରେ
ପୋଡ଼ି ଦିଏ ସବୁ ସ୍ନାୟୁ
ସବୁ ପରମାୟୁ ଧୀରେ ଧୀରେ,
ମୃତ୍ୟୁ ଆଣେ ଅନ୍ତିମ ହାହାକାର
ହୃଦୟ ଥରାଇ ।

ହାହାକାର ପଚା ଶବ ପରି
ବେଶି ଦିନ ହୃଦୟରେ ପୋଷି
ରଖିଦେଲେ ହୃଦୟ ଗନ୍ଧାଏ ।
ନିହାତି ପାଖ ଲୋକ
ଘୁଞ୍ଚି ଯାନ୍ତି ଦୂରକୁ ଦୂରକୁ ।
ହାହାକାର ବଡ଼ ଭୟାନକ ।

ଦୁଃଖର ମରୁଭୂମି ପାରି ହେଉ ହେଉ
ବିଷାଦର ବାଲି-ଝଡ଼ ଉଠେ,
ହୁ-ହୁ ଶବ୍ଦ କରି ହାହାକାର
ବହିଯାଏ ଏ ପ୍ରାନ୍ତରୁ ସେ ପ୍ରାନ୍ତ
ପର୍ଯ୍ୟନ୍ତ ।
ଏ ସମୟରେ ବରଂ ଓଟ ପରି
ମୁଣ୍ଡ ପୋତି ଦୁଃଖକୁ ସହି
ନେବା ଭଲ ସହସ୍ର ଗୁଣରେ ।



# ଅନ୍ଧାର

ଅନ୍ଧାରର ରୂପ ଅଛି,
ଅଛି ଅବୟବ,
ସେ ରୂପ ଦେଖିବାକୁ
ଆଖି ଦରକାର ।
ଆକଣ୍ଠ ନିମଜ୍ଜିତ ଅନ୍ଧାରରେ
ମୁଁ ଆଜି
ତାର ସେହି ମୋହିନୀ
ରୂପକୁ ଦେଖୁଛି ।

ଅନ୍ଧାରରେ ପଡ଼େ ନାହିଁ ଯବନିକା,
କିଛି ହେଲେ ଅନ୍ତରାଳ ନାହିଁ
ଅନ୍ଧାରର,
ଭାଙ୍ଗିଯାଏ ସବୁ ଅବରୋଧ
ମୁହୂର୍ତ୍ତ ଭିତରେ,
ଅନ୍ଧାର ବାଧା ମାନେ ନାହିଁ ।
ଅଲୌକିକ ଅନ୍ଧାର ଆଲୋକଠୁଁ
ବଳି ଦୀପ୍ତିମାନ ।

ଅନ୍ଧାର ଦେଖୁଥାଏ ଆମକୁ
ତନ୍ନ ତନ୍ନ କରି,
ତା ଆଖିରେ ପଲକ ପଡ଼େନା,
ଅନ୍ଧାର ଅନ୍ଧ ନୁହେଁ ଜନ୍ମା,

ତା ଦୃଷ୍ଟି ବଡ଼ ମର୍ମଭେଦୀ,
ଆମର ଅନ୍ତଃସ୍ଥଳ ତାକୁ
ଦିଶିଯାଏ ।

ରାତି ଆଉ ଅନ୍ଧାର ଭିତରେ
ଅଛି ପାରମ୍ପର୍ଯ୍ୟ କିଛି,
ରାତି ମଗ୍ନ ଅନ୍ଧାରରେ, ପୁଣି
ଅନ୍ଧାର ଲୀନ ହୁଏ ରାତିର
ଦେହରେ ।

ଆଉ ମଣିଷର ମନର ଅନ୍ଧାର
କଟେ ନାହିଁ ସହଜରେ
ଲୁଚିଥାଏ ହୃଦୟର କନ୍ଦି-ବିକନ୍ଦିରେ ।



# ଫକୀରମୋହନ

ତୁମେ ଥିଲ ଦୀର୍ଘ-ଦେହୀ,
ଶାଳପ୍ରାଂଶୁ ତୁମ ଅବୟବ,
ବହୁ ଅଛୁ ଆମେ ତୁମ ଶବ,
ଶତାବ୍ଦୀ ଶତାବ୍ଦୀ ଧରି
ଆଜି ବି ।
ଦେହ ତୁମ ଛୁଇଁ ନାହିଁ
କୌଣସି ଅନଳ,
କ୍ରମଶଃ ଥମିଗଲା
ସବୁ କୋଳାହଳ,
ତୁମ ଋଣ ଶୁଝି ହେଲା
ନାହିଁ ।
ପରଭୃତ ଡାକି ଡାକି
ଫେରିଗଲା ତୁମ 'କାନନ'ରୁ
ତୁମେ ଶୁଣିଲନି ।

ଆମ ପରି ତୁମର ବି
ଥିଲା ପିଲା- ବେଳ,
ମାଟି ବଂଶ ଅବଧାନ
ମାରି ନାହିଁ ତାର ସେହି ଛାଟ,
ଦେଖୁ ଦେଖୁ ସରିଗଲା
ତା ଖଡ଼ି-ଗୋଟାଳି,

ଧରିଲା ସେ ନିଜ ଗାଁ ବାଟ,
ସେତେବେଳେ ଧୂସର ଗୋଧୂଳି ।

ଆମ ପରି ତୁମ ରକ୍ତ ଖାଇଛନ୍ତି
ଓଡ଼ଶ ଓ ଗଡ଼ଜାତୀ ମଶା,
ଆମ ପରି ତୁମେ ବି ବେଳେ ବେଳେ
ଖେଳିଅଛ ପଶା,
ସାଥୀଙ୍କ ମେଳରେ ।

ନିରଙ୍କୁଶ ଅନ୍ଧାରରେ ଆମେ
ସବୁ ନିମଜ୍ଜିତ ଆଜି,
ଯଦିଓ ଡାକ୍ତର ନୁହଁ
କବିରାଜୀ ନୁହେଁ ତୁମ ପେଶା,
ତଥାପି ଦେବକି କିଛି
'ପେଟେଣ୍ଟ' ଔଷଧ,
ଏ ଜାତିକୁ ବଞ୍ଚାଇବା ପାଇଁ
ଯାହା ତୁମ ପକେଟରେ
ଅବହେଳେ ପଡ଼ି ରହିଅଛି ?



# ପ୍ଲାବନ

ଦିଗନ୍ତର ଅପର ପାରରେ
କଣ ଅଛି ? ଖାଲି ଅପନ୍ତରା ?
ଦିଗନ୍ତର ସୀମନ୍ତରେ କିଏ ନିତି
ଅଜାଡ଼େ ଫରୁଆ ସିନ୍ଦୂରର ?
ଉତ୍ତର ମିଳେନା କିଛି
ଏ ସବୁ ମୌଳିକ ପ୍ରଶ୍ନର ।

କାହାରି କୂଟ କୌଶଳରେ
ସବୁ କିଛି ଓଲଟି ଯାଏ
ଅଚାନକ ବନ୍ୟା ମାଡ଼ି ଆସେ ।
ଚାରିଆଡ଼େ ଖାଲି ପାଣି, କାଦୁଅ,
ଉଗୁଡ଼ା କଳସୀ,
ମାଠିଆ ନିଃଶେଷ ହୋଇ
ଗଡୁଥାଏ ଏମୁଣ୍ଡ-ସେମୁଣ୍ଡ ।

ଦିଗନ୍ତ ବି ଭାସିଯାଏ
ପବନର ଉଦ୍ୟତ ଚାବୁକ
ଆସି ପଡ଼େ ମେଘର ପିଠିରେ ।

ପ୍ରାବୃଟର ଘନ-ଘଟା, ବିଜୁଳୀର
ପାଣ୍ଡୁର ଅନଳ,
ଉତ୍ତାପ ଅପଗତ, ମୁହୂର୍ତ୍ତକେ
ବର୍ଷାରେ ତିନ୍ତୁଥାଏ ପ୍ରାଗୈତିହାସିକ
ପାହାଡ଼ ।

ପ୍ଳାବନ ଆସୁଛି ଧାଇଁ
ଆଶ୍ଳେଷ, ଚୁମ୍ବନର ଶବ୍ଦ ଶୁଭେ
କମ୍ପମାନ୍ ସ୍ତବ୍ଧ ବନସ୍ପତି ।
ପର୍ଯ୍ୟାପ୍ତ ସିକ୍ତ ଶିହରଣ
ପଡ଼ି ରହେ ଏଣେତେଣେ
ଗାଁର ଗାଧୁଆ ତୁଠରେ ।
ଧୋଇଗଲା ଯେତେକ ଜଞ୍ଜାଳ,
ଧୋଇଗଲା ମୋ କୈଶୋର
ଗାଁର ଆମ୍ବ ତୋଟାରେ ଆମ୍ବ ଗୋଟା
ଧୋଇ ହୋଇଗଲା ମାନସ ପଟରୁ ।

ଏ କିଛି ଦାନ ନୁହେଁ
କୌଣସି କୃପଣ ଋତୁର,
ପ୍ଳାବନ ତ ପ୍ରତିବର୍ଷ ଆସେ,
ଉଡ଼ନ୍ତା କଙ୍କିଙ୍କ ଡେଣାରେ
ଲେଖାଥାଏ ପ୍ରବାସୀ ମେଘଙ୍କ ଠିକଣା ।



# ନାୟିକାର ଉକ୍ତି

ଧମନୀରେ ସୈନ୍ୟଙ୍କ ଫ୍ଲାଗ୍-ମାର୍ଚ୍ଚ,
ଛାତିରେ ଭାରି ବୁଟ୍ ଜୋତାର ଶବ୍ଦ,
ହୃଦୟ ମନ୍ଥି ହୋଇ ବାହାରି
ଆସୁଛି ଦୀର୍ଘ-ଶ୍ୱାସ,
ବାଜି ଉଠେ ଦୂରାଗତ ହୁଇସିଲ୍,
ରେଳଗାଡ଼ି ବାହାରିଯାଏ
ସିଗନାଲ୍ ନ ମାନି,
କେଉଁ ଏକ ଅଜଣା
ଅପନ୍ତରା ଆଡ଼କୁ ।
ଢିଙ୍କିର ପାହାର ପଡ଼େ ଛାତିରେ
ଗମ୍ ଗମ୍ ଝାଳ ବୋହିଯାଏ
କାହିଁକି ହାତ-ମୁଠା ଓଦା
ହୁଏ,
ଅକାରଣେ ଦେହ ଥରୁଥାଏ
ତୁମକୁ ଦେଖିଲେ ?

ତୁମେ ମୋତେ କହିଥିଲ ସଜାଇବ
ଚନ୍ଦନ, ଅଲକ୍ତକ, ଅବୀର ଗୋଳାଇ
ମଣ୍ଡି ଦେବ ଦେହ ସୁଷମାକୁ,
ନାନାବିଧ କୁସୁମ ଖଞ୍ଜି ଦେବ
ଗଭାରେ ମୋହର,
କିନ୍ତୁ କାହିଁ,
ତୁମେ ଆସିଲନି ?

ଆମ୍ଭେ କଣ ରାତ୍ରିବାସ
କରୁଥିବା ପାନ୍ଥଶାଳାରେ,
ହେମନ୍ତ କଣ ଆଜୀବନ
ଆମକୁ ଆବୋରି ରହିବ,
ଜୀବନ କଟିଯିବ ରିକ୍ତ
ଗୋଧୂଳିରେ କେବଳ,
ବସନ୍ତ ଆସିବନି, କେଭେ ?

କିଏ କାହାକୁ ଫାଙ୍କି ଦେଲା
କିଏ ତାର କରିବ ହିସାବ,
ଆଜି ବି ସମୟ ଅଛି
ହେଉ ପଛେ ଝାଟି-ମାଟି ଘର,
ପଡ଼ିଥିବ ଚିତା ଅଗଣାରେ,
ଆଉ ଚାଳରେ ଲାଉ ଡଙ୍କ
ମାଡ଼ିଥିବ ବହଳ ଭାବରେ ।
ଲୋଡ଼ା ନାହିଁ ରଙ୍ଗିନ୍ କାନନ,
ଚଟୁଳ ପ୍ରଲୋଭନ କଣ ହେବ,
ମୁଁ ମଳୟକୁ ଏଥର
ଫେରି ଯିବାକୁ ଦେବି ନାହିଁ ।



# ଚତୁର୍ଥୀର ଜହ୍ନ

ଚତୁର୍ଥୀ ତିଥିର ଜହ୍ନ
ବଡ଼ ବଙ୍କା, ବଡ଼ କମନୀୟ,
ତଥାପି ଅନ୍ଧାରକୁ କାଟିପାରେ
ସାବଲୀଳ ମ୍ଳାନ ଜୋଛନାରେ ।
ସେ ପୁଣି ଠିଆ ହୁଏ
ମୋ ଝର୍କାରେ
ଲୁଚି ଲୁଚି ଆସି
ମୂଳରୁ ବର୍ତ୍ତୁଳ ନୁହେଁ
ଯୌବନରେ ପହଞ୍ଚି ପାରିନି
ତନ୍ୱୀ, କ୍ଷୀଣ, ସମତଳ ଛାତି ।
ଆକାଶରେ ଜକ ଜକ
କେବଳ ଚେନାଏ ଆଲୁଅ,
ଅବୟବ ପାଇ ନାହିଁ,
ପାଇ ନାହିଁ ହାତ, ଗୋଡ଼,
ଅଣ୍ଟା, ଛାତି, ଅଥବା
ନିତମ୍ବ ।
ଅତ୍ୟନ୍ତ ଅଲିଅଳ ନିହାତି
ନବୋଢ଼ା କିଶୋରୀ ।
ଏହି କ୍ଷଣି ପହଞ୍ଚିଲା ଚତୁର୍ଥୀ
ତିଥିରେ,
ପୂର୍ଣ୍ଣମୀ ଅଛି ବହୁତ ଦୂରରେ ।

ଫାଜିଲ ମେଘମାନେ
ଫୁସୁଲାନ୍ତି ତାକୁ ସବୁବେଳେ,
ତା ଦେହକୁ ଲୁଣ୍ଠନ
କରି ନାହିଁ ଫେନିଳ ସମୁଦ୍ର ।
ସେ କିନ୍ତୁ ମୋ ଝର୍କାରେ
ପ୍ରତୀକ୍ଷାରେ ଅଛି,
କେତେବେଳେ ମୁଁ ଆସି
ଠିଆ ହେବି, ଝର୍କା ଆଗରେ,
ତାକୁ ଦେଖିବାକୁ ।

